# ଅପରାହ୍ନର ଅବଧାନ

(କ୍ଷୁଦ୍ରଗଳ୍ପ ସଂକଳନ)



ପ୍ରକାଶକ :
ଅଗ୍ନି
୬୮, ଖାରବେଳ ନଗର, ଭୁବନେଶ୍ୱର

ପ୍ରଥମ ମୁଦ୍ରଣ :
୨୦୦୪

ମୁଦ୍ରଣ :
ଅପୂର୍ବା ଅଫସେଟ୍
୪୮, ମଧୁସୂଦନ ନଗର, ଭୁବନେଶ୍ୱର

ପ୍ରଚ୍ଛଦ :
ଶ୍ୱେତା ମହାପାତ୍ର

ମୂଲ୍ୟ :
ସତୁରି ଟଙ୍କା ମାତ୍ର

---

APARANHARA ABADHANA (A Collection of short stories)
by Geeta Tripathy. Published by Agni, Bhubaneswar.
Price-Rs 70/-(Seventy only)

# କାହାଣୀ କ୍ରମ





# ଅପରାହ୍ନର ଅବଧାନ

'ମୋ ସାଙ୍ଗମାନଙ୍କ ବାପା, ମା' କେତେ ବଢ଼ିଆ । ସେମାନଙ୍କ ସାଙ୍ଗେ ଇଣ୍ଟର୍‌ନେଟ୍‌ରେ ଚ୍ୟାଟ୍ କରୁଛନ୍ତି । ତୁମେ ଦୁଇଜଣ ଯାକ ଗଧ । ଯେତେ ଶିଖାଇଲେ ବି ଶିଖି ପାରୁନ । କି ଡାକ୍ତର ହୋଇଛ କେଜାଣି ? ମତେ ଲାଗୁନି ପେସେଣ୍ଟମାନଙ୍କୁ ଠିକ୍‌ରେ ଟ୍ରିଟ୍ କରି ପାରୁଥିବ ।' ଏଇ ବର୍ଷ ବମ୍ବେ ପଢ଼ିବାକୁ ଯାଇଥିବା ଉଣେଇଶ ବର୍ଷର ପୁଅ ମିଟୁ ରାଗୁଥିଲା ମିତା ଓ ମିହିରଙ୍କ ଉପରେ । ଦୁଇଦିନ ହେଲାଣି ହଷ୍ଟେଲରୁ ଆସିଛି ମିଟୁ । ଏଇ ସାତ ମାସ ଭିତରେ ତିନିଥର ଘରକୁ ଆସି ସାରିଲାଣି । ଗଲା ଦୁଇଥର ତ ଇଣ୍ଟରନେଟ୍ ଶିଖିବା ବିଷୟରେ କିଛି କହୁ ନଥିଲା । ଏଥରକ କ'ଣ ହେଉଚି କେଜାଣି ? ତା' ବାପା ମା' କାହିଁକି ତା' ସାଙ୍ଗେ ଚ୍ୟାଟ କରିପାରିବେନି ବୋଲି ରାଗି ଯାଉଛି ।

ମିହିର ଓ ମିତାଙ୍କ ହାତ ଧରି ଟାଣିଲା ମିଟୁ ନିଜ ବଖରାରେ ଥିବା କମ୍ପୁଟର ପାଖକୁ । ହାତ ଛଡାଇ ଆଣି ମିହିର ସିଧା ମନା କରି ଦେଲେ ସିଏ ଏବେ ଶିଖି ପାରିବେନି, ଇଣ୍ଡିଆ, ପାକିସ୍ଥାନ ମ୍ୟାଚ ଦେଖିବେ । ପୁଅ ମନ ଖୁସି କିରବା ପାଇଁ ତରବର କରି ଚଷମାଟା ପିନ୍ଧି ମିଟୁ ପଛେ ପଛେ ମିତା ତା' ବଖରାକୁ ଗଲା । ମା'କୁ କମ୍ପୁଟର ସାମନାରେ ଥିବା ଚୌକିରେ ବସାଇ, ନିଜେ ପଛରେ ଛିଡା ହୋଇ ମିଟୁ କହିବାକୁ ଲାଗିଲା, କମ୍ପୁଟରେ ଅନ୍ କରି ସିଧା ଇଣ୍ଟରନେଟ୍ କୁ ଯାଇ କ୍ଲିକ୍ କରିବ । ତା' ପରେ ସ୍କ୍ରିନ୍‌ରେ ତୁମ ନାଁ ଓ ପାସ୍‌ୱାର୍ଡ ଲେଖିଲା ପରେ ଜାଏଲ୍ ପାଖକୁ ଯାଇ କ୍ଲିକ୍ କରିବ । ଦୁଇଦିନ ହେଲାଣି ମିତା ନାଁରେ ଇମେଲ୍ ଆଡ୍ରେସ୍ ଖୋଲି ମିଟୁ ଶିଖାଉଛି । ମିତା ଏକାଗ୍ର ହୋଇ କାହାପରେ କ'ଣ କରିବ ମନେ ରଖିବାକୁ ଚେଷ୍ଟା କରୁଛି, ତଥାପି କଣ ସବୁ ଏପଟ ସେପଟ ହୋଇଯାଉଛି । ଏଇ ବାଇଫୋକାଲ ଚଷମାଟା ପିନ୍ଧିଲା ବେଳକୁ ଉପର କାଚ ପଟେ ତ କିଛି ଦିଶୁନି । ତେଣୁ ସବୁବେଳେ ମୁଣ୍ଡଟାକୁ ପଛକୁ ଭାଙ୍ଗି ତଳ କାଚ ପଟେ ଦେଖିବାକୁ ପଡୁଛି ଆଉ ସେଥିପାଇଁ ବେକଟା କଟ୍‌କଟ କରୁଛି । ମିଟୁ କ'ଣ ଏତେ କଥା ଜାଣିପାରୁଛି ? ତା' ନଜରରେ ତ ମା' ହେଉଛି ଦୁନିଆର ସବୁଠାରୁ ବଡ ବୋକା । ଅଥଚ ପିଲାଦିନେ ମିତାର ବେଶିବୁଦ୍ଧି ବୋଲି ବାପା ବୋଉ କେତେ ତାରିଫ୍ କରୁଥିଲେ । ରେଡ଼ିଓରେ ବୋଉକୁ କଟକ ଷ୍ଟେସନ ଜମାରୁ ଲଗାଇ ଆସେନି ଏବଂ ସେଥିପାଇଁ ଖୋଜାପଡେ ମିତାକୁ । ମିତା ଲଗାଇଦିଏ ରବିବାର ଦିନ ସକାଳେ ବଡଭାଇ ଓ ଅପାଙ୍କ 'ଶିଶୁ ସଂସାର' ଏବଂ ଦ୍ୱିପ୍ରହରରେ 'ନାରୀ ମହଲ' । ଆଉ ବାପା

ବିଲାତ ଫେରନ୍ତା ହୋଇଥିଲେ ବି ବହି ଛଡା ଅନ୍ୟ କିଛି ଜାଣନ୍ତି ନି । ମିତା ତାଙ୍କ ପାଇଁ ଲଗାଇଦିଏ ' ଗାଁ ଗହଳି' ଅବା 'ଦାସକାଠିଆ' । ବୋଉ ରେଡ଼ିଓ ସାମନାରେ ଥିବା ଯୋଡା ଖଟରେ ପାନ ଭାଙ୍ଗୁ ଭାଙ୍ଗୁ ଏବଂ ବାପା ଆରାମଚୌକିରେ ବସି ତା' ପିଉ ପିଉ ତାଙ୍କ ପ୍ରିୟ କାର୍ଯ୍ୟକ୍ରମ ଶୁଣନ୍ତି । ଅସଲ କଥା ହେଲା ମିତା ସବୁବେଳେ ସିଲୋନ ଲଗାଇ ହିନ୍ଦୀ ଗୀତ ଶୁଣେ । ସେଥିପାଇଁ ବାପା ବୋଉ ରେଡ଼ିଓକୁ ଯେତେ ମୋଡାମୋଡି କଲେ ବି କଟକ ଷ୍ଟେସନ ଲଗାଇ ପାରନ୍ତିନି କାହିଁକି ନା ସେମାନେ ମିଡ଼ିୟମ୍ ବ୍ୟାଣ୍ଡକୁ ବଦଳି କରିବା ଜାଣି ନଥାନ୍ତି । ମିତାକୁ ତା'ର ବାପା, ବୋଉ ଆହୁରି ପ୍ରଶଂସା କରିଥିଲେ ଯେତେବେଳେ ସିଏ ପ୍ରବେଶିକା ପରୀକ୍ଷା ଦେଇ ମେଡ଼ିକାଲ୍‌ରେ ସିଟ୍ ପାଇଥିଲା ଏବଂ ଚାକିରି କରୁ କରୁ କାର୍ ଚଳାଇବା ଶିଖିଯାଇଥିଲା । ମିତା କଥା ଛାଡ, କେମିତି ସିନା ଡାକ୍ତରୀରେ ସିଟ୍‌ଟେ ମିଳିଥିଲା, ନ ହେଲେ ସତରେ ସିଏ ଏତେ ଭଲ ପଢୁ ନଥିଲା । ଅଙ୍କ କରିବାରେ ଖାଲି ଓସ୍ତାଦ ଥିଲା । ଶୁଭଙ୍କରୀ ଠାରୁ ସାଙ୍କେତିକ ଯାଏ ଯେ କୌଣସି ଅଙ୍କ ଦେଲେ ଚଟାପଟ୍ କରିଦିଏ । ମିହିର କିନ୍ତୁ ସତରେ ଖୁବ୍ ଭଲ ପଢୁଥିଲେ । ସବୁଥିରେ ଭଲ ନମ୍ବର ରଖୁଥିଲେ । ଇଂରାଜୀ ଠାରୁ ଅଙ୍କଯାଏ । ସାନ ଭାଇ ଭଉଣୀମାନେ ଯେତେବେଳେ ଯିଏ ଯାହା କରି ପାରୁନଥିଲେ ଅବା ବୁଝି ପାରୁନଥିଲେ ମିନିଟ୍‌କରେ ସବୁ କରିଦେଉଥିଲେ । ଏଇ କଥା ଶାଶୁଙ୍କ ଠାରୁ କେତେଥର ଶୁଣିଛି ମିତା । ଅଥଚ ମିଟୁ ଦୃଷ୍ଟିରେ ମିତା ଓ ମିହିର ଦୁଇଜଣଯାକ ନିପଟ ବୋକା । ସେଥିପାଇଁ ମିତା କହିଥିଲା, 'ଦେଖ ତୁ ସିନା ଆମକୁ ସେମିତି କହୁଛୁ, କିନ୍ତୁ ଆମ ବାପା, ମା' ଆମକୁ ବୁଦ୍ଧିଆ ବୋଲି କହୁଥିଲେ ।' ତା'ର ଉତ୍ତରରେ ମିଟୁ କହିଥିଲା, 'ତୁମ ବାପା ମା' ତୁମଠାରୁ ବୋକା ଥିବେ ।' ହସି ହସି ମିତା କହିଥିଲା, 'ଆଉ କୋଡ଼ିଏ ବର୍ଷ ପରେ ତୋ ପୁଅ ବି ତୋତେ ଠିକ୍ ଏମିତି କହୁଥିବ ଯେମିତି ତୁ ଆମକୁ କହୁଛୁ ।'

'ମା' ଏଇଯାକେ ମନେ ରଖିଲ ତ ?' ମିତାକୁ ହଲେଇଦେଇ ମିଟୁ କହିଲା । ହେ ଭଗବାନ ! ଏ ଭିତରେ ମିଟୁ କମ୍ପୁଟରରେ କେତେ କ'ଣ କରିସାରିଲାଣି । ମିତା ପୂରା ଅନ୍ୟମନସ୍କ ରହିଯାଇଛି । କିଛି ଜାଣି ପାରିନି । 'ଆଉଥରେ କହ' କହିଲେ ମିଟୁ ରାଗିଯିବ । ତେଣୁ ବାଧ୍ୟ ହୋଇ ପୁଅକୁ ମିତା କହିଲା,

'ହଁ, ହଁ, ମନେ ରହିଲା । ଏବେ ମୁଁ କ'ଣ କରିବି ?'

'ଏବେ ତୁମେ ମୋ ପାଖକୁ କ'ଣ ହେଲେ ଚିଠି ଲେଖ । ମୁଁ ଟିକେ ଇଣ୍ଡିଆ କେତେ ସ୍ଲୋର କଲା ଦେଖିକି ଆସୁଛି । ଆସିଲା ପରେ କହିବି ମେଲ୍ କେମିତି ତୁମେ ମୋ ଆଡ୍ରେସ୍‌ରେ ପଠାଇବ ।'

'ଆଚ୍ଛା ହେଉ ।' ବାଧ ଛାତ୍ରୀଟି ଭଳି ମିତା କହିଲା । ମିଟୁ ତରତର ହୋଇ ଟି.ଭି ଦେଖିବାକୁ ଚାଲିଗଲା ।

ମିଟୁର ଯିବା ବାଟକୁ ଚାହିଁ ରହିଲା ମିତା । ଏଇ ମିଟୁ ଦିନେ ବଡ ହୋଇ ଏତେ ଭଲ ପଢ଼ିବ ଏ କଥା ସିଏ ସ୍ୱପ୍ନରେ ସୁଦ୍ଧା ଭାବି ପାରିନଥିଲା । ମନେ ପଡୁଥିଲା ମିଟୁର ତିନିବର୍ଷର ମୂର୍ତ୍ତିଟି । ପାଠ ପଢ଼ିବାକୁ କି ଡର । ସ୍କୁଲ ଯିବାକୁ ଆଦୌ ମନ୍ ନଥିଲା । ତାକୁ ତିନି ବର୍ଷ ପୂରା ହେଉହେଉ ତା'ର ନାଁ ଲେଖା ହୋଇଥିଲା ଘର ପାଖ ନର୍ସରୀ ସ୍କୁଲରେ । ସକାଳୁ ତା'ର ନିଦ ଜମାରୁ ଭାଙ୍ଗେନି । ସେଥିପାଇଁ ମିତା ପାହାନ୍ତିଆରୁ ଉଠି ଘରର କାମ ଓ ନିଜର କାମ ସକାଳ ସାତଟା ଭିତରେ ସାରିଦିଏ । ତା' ପରେ ମିଟୁର କାମ ଆରମ୍ଭ କରେ । ପ୍ରଥମେ ଖଟ ପାଖ ଟେବୁଲରେ ପୁଅର ସାର୍ଟ, ପ୍ୟାଣ୍ଟ୍, ଜୋତା, ମୋଜା, ଟାଏ, ସ୍କୁଲ୍ ବ୍ୟାଗ୍, ପାଣି ବୋତଲ ଓ ଖାଇବା ପାଇଁ ଗିନାରେ ଚୁଡା, ଚିନି, ସର ଓ କଦଳୀ ଚକଟା ଆଦି ରଖିଦିଏ । ପୁଅ ଶୋଇଥିବା ଅବସ୍ଥାରେ ତା'ର ଡ୍ରେସ୍ ଖୋଲି ତେଲ ମାଲିସ୍ କରିଦେଇ ସଂଲଗ୍ନରେ ଥିବା ଗାଧୁଆ ଘରକୁ ନିଏ । ସେଠି କାଖ କରି ଦାନ୍ତ ଘଷାଏ ଏବଂ ଗାଧୋଇ ପାଧୋଇ ପୋଛାପୋଛି କରି ନେଇ ଆସେ । ଏତିକି କାମ କଲାବେଳକୁ ମିତା ଅଧା ଓଦା ହୋଇଯାଇଥାଏ । ପୁଅକୁ ଡ୍ରେସ୍ ପିନ୍ଧାଇ ରେଡି କରୁ କରୁ ତା' ପାଟିକୁ ଚାମଚରେ ବଢ଼ାଇଦିଏ ଚୁଡା ଚକଟା । ସିଏ ଏଇ କଳଖିଆ କରେ । ତା' ହେଲେ ମିଟୁକୁ ଗିଳିବାକୁ ସୁବିଧା ହେବ । ହେଲେ ବି ମିଟୁ ଚାମଚେ ଦୁଇ ଚାମଚ ଖାଇଲା ପରେ ଆଉ ଖାଇବାକୁ ଇଚ୍ଛା କରେନି । ଜବରଦସ୍ତି କଲେ ବାନ୍ତି କରେ । ସେତିକି ଖିଆରେ ସନ୍ତୁଷ୍ଟ ହୋଇ ତରତରରେ ଶାଢ଼ୀଟା ବଦଳାଇ ଡାହାଣ ହାତରେ ମିଟୁକୁ କାଖକରି ଆର ହାତରେ ସ୍କୁଲ୍ ବ୍ୟାଗ୍ ଓ ପାଣି ବୋତଲ ଧରି ମିତା ତାକୁ ଛାଡ଼ିବାକୁ ଯାଏ ସ୍କୁଲ୍‌କୁ । ବାଟସାରା ମିତା କାନ୍ଧରେ ମୁଣ୍ଡ ରଖି ମିଟୁ ଶୋଇଥାଏ । ସ୍କୁଲର ଗେଟ୍ ପାଖରୁ ମିଟୁକୁ ତାଙ୍କ ସ୍କୁଲର ପ୍ରିନ୍‌ସିପାଲ ମିସେସ୍ ମୁଖାର୍ଜି ମିତା କାଖରୁ ନେଇଯାଆନ୍ତି । ମିଟୁ ଡିହୁରି ଛାଡି ମିତା ଆଡକୁ ହାତ ବଢ଼ାଇ କାନ୍ଦେ । ପ୍ରିନ୍‌ସିପାଲ ତାକୁ କେତେ ବୁଝାନ୍ତି । ସିଏ ସ୍କୁଲ୍ ଆସିଲେ ପାଠ ପଢ଼ିଲେ ସିନା ବଡ ମଣିଷ ହେବ ନ ହେଲେ ରିକ୍ସାବାଲା ହେବ । ମିଟୁ କାନ୍ଦି କାନ୍ଦି ଜୋର୍‌ରେ କହେ, ସିଏ ପଛେ ରିକ୍ସାବାଲା ହେବ କିନ୍ତୁ ପାଠ ପଢ଼ିବନି । ମିତାକୁ ଘରକୁ ଯିବାପାଇଁ କହି ମିସେସ୍ ମୁଖାର୍ଜି ମିଟୁକୁ ଭିତରକୁ ନେଇଯାଆନ୍ତି । ମିତା ବାଧ ହୋଇ ପଛକୁ ଅନେଇ ଅନେଇ ଘରକୁ ଫେରେ ଏବଂ ମିହିରଙ୍କ ସାଙ୍ଗରେ ଡାକ୍ତରଖାନା ଯାଏ ଠିକ୍ ଆଠଟାରେ । ଡାକ୍ତରଖାନାରେ ମନଟା ତା'ର ଗୋଳେଇ ଘାଣ୍ଟି ହୁଏ । ମିଟୁର କାନ୍ଦୁରା ମୁହଁ ମନେପଡେ ଏବଂ ତାକୁ ବି କାନ୍ଦ ଲାଗେ । ଏଗାରଟାରେ

ପୁଅର ଛୁଟି ହୁଏ । ମିତା ପାଖରେ କାମ କରୁଥିବା ଝିଅ ନମିତା ଯାଇ ମିଟୁକୁ ସ୍କୁଲରୁ ନେଇ ଆସେ । ବାରଟାରେ ଘରକୁ ଫେରୁ ଫେରୁ ମିତା ପୁଅର ଟିଫିନ୍ ବାକ୍ସ ଖୋଲି ଦେଖେ । ସେଥିରେ ହାତ ମାରି ନଥାଏ ମିଟୁ । ମିତା ଯେତେବେଳେ ପଚାରେ କ'ଣ ପାଇଁ ଖାଇନୁ, ମିଟୁ ଜବାବ ଦିଏ ଖାଇବାରେ ସମୟ ନଷ୍ଟ କଲେ ଖେଳିବ କେତେବେଳେ ? ପୁଅ କଥାରେ ହସିବ କି କାନ୍ଦିବ ଜାଣି ପାରେନା ମିତା । ସକାଳୁ ଦିନ ବାରଟାଏଯାଏ ଯଦି ଦୁଇ ଚାମଚ ଚୂଡା ଖାଇ ରହିବ ମିଟୁ, ତାହାଲେ ତା'ର ସ୍ୱାସ୍ଥ୍ୟ ଖରାପ ହୋଇଯିବ । ସେଥିପାଇଁ ଅନ୍ୟ ଏକ ଉପାୟ ବାହାର କଲା ମିତା । ସକାଳୁ ସକାଳୁ ମିଟୁ ଶୋଇଥିବା ଅବସ୍ଥାରେ ତାକୁ କ୍ଷୀର ବୋତଲ ଧରାଇ ଦେଉଥିଲା ଏବଂ ସତକୁ ସତ ମିଟୁ ଜାଣି ନପାରି ବୋତଲକ ଯାକ କ୍ଷୀର ପିଇ ଦେଉଥିଲା । ତା'ପର ଠାରୁ ସବୁଦିନ କ୍ଷୀର ବୋତଲଟେ ପିଆଇ ଶାନ୍ତିରେ ନିଶ୍ୱାସ ମାରିଥିଲା ମିତା ।

ସିଏ ସିନା ମିଟୁର ଖାଇବା ସମସ୍ୟା ଦୂର କରିଥିଲା ଏବଂ କୌଣସି ପ୍ରକାରେ ସ୍କୁଲ୍ ପଠାଇ ଦେଉଥିଲା କିନ୍ତୁ ମିଟୁ ପଢ଼ାରେ ଆଦୌ ମନ ଦେଉନଥିଲା । ରାତିରେ ମିତା ତାକୁ ପଢ଼ାଇ ବସିଲେ ମିଟୁ ପଚାରି ବସେ, 'ଏ ପାଠପଢ଼ା କିଏ ଆରମ୍ଭ କରିଥିଲା ଏବଂ କାହିଁକି କରିଥିଲା ? ରାସ୍ତାରେ କୁକୁରମାନେ ଖେଳୁଛନ୍ତି, ପଡ଼ିଆରେ ଗାଈ ଓ ଛେଳିମାନେ ଚରୁଛନ୍ତି, ସେମାନେ କାହିଁକି ସ୍କୁଲ ଯାଉନାହାନ୍ତି ? ମିତା ତା' ପ୍ରଶ୍ନର ଉତ୍ତର ଖୋଜି ଖୋଜି ବ୍ୟସ୍ତ ହୋଇଯାଏ । ଶେଷରେ ରାଗିକି ଯେତେବେଳେ ମିଟୁ କୁ କହେ, 'ଖେଳିଲା ବେଳେ ଖେଳୁନୁ, କିନ୍ତୁ ପଢ଼ିବାକୁ କାହିଁକି ମନା କରୁଛୁ ?' ଚଟାପଟ ଉତ୍ତର ଦିଏ ମିଟୁ, ଖେଳିଲେ ତାକୁ ଖୁବ୍ ଖୁସି ଲାଗେ କିନ୍ତୁ ପାଠ ତାକୁ ଭଲ ଲାଗୁନି, କଷ୍ଟ ଲାଗୁଛି, ତା' ଛଡା ଏତେ କଷ୍ଟ କ'ଣ ପାଇଁ କରିବ ଏବଂ ତା'ର ଲାଭ କ'ଣ ହେବ ? ମିତାର ମୁଣ୍ଡ ଟାଇଁ ଟାଇଁ କରି ବିନ୍ଧିବା ଆରମ୍ଭ ହୋଇଯାଏ ପୁଅର ପ୍ରଶ୍ନ ମାଡରେ । ଆଉ ମିଟୁ ଯେଉଁଦିନ ମିହିରଙ୍କ ଠାରୁ ଜାଣିଲା ଭାରତ ପାଇଁ ଖେଳୁଥିବା କ୍ରିକେଟ୍ ଖେଳାଳିମାନଙ୍କୁ ହଜାର ହଜାର ଟଙ୍କା ମିଳେ ସେଦିନ ତା'ର ବୁଦ୍ଧି ବଣା ହୋଇଯାଇଥିଲା । ବାରମ୍ବାର ମା'କୁ ପଚାରୁଥିଲା 'ସେମାନେ ଖେଳିବେ ଓ ଟଙ୍କା ବି ପାଇବେ ?' ତା' ପରେ ପରେ କହିଥିଲା ସିଏ ବି ଗାଭାସ୍କର ଓ କପିଳଦେବ ଭଳି କ୍ରିକେଟ ଖେଳିବ, ଆଉ ପାଠ ପଢ଼ିବା ଦରକାର ନାହିଁ । ମିତା ପୁଅକୁ ବୁଝେଇଥିଲା, 'କ୍ରିକେଟ୍ ଖେଳି କରି ଜିତିଲେ କି ହାରିଲେ ସେଠି ତତେ ବହୁତ ପ୍ରଶ୍ନର ସାମନା କରିବାକୁ ପଡ଼ିବ । ପାଠ ପଢ଼ି ନଥିଲେ ଇଂରାଜୀରେ ସେଠି ତୁ କିଛି ଉତ୍ତର ଦେଇ ପାରିବୁନି । ତେଣୁ କ୍ରିକେଟ୍ ଖେଳିଲେ ବି ସ୍କୁଲ୍ ଯିବାକୁ ପଡ଼ିବ ଏବଂ ପାଠ ପଢ଼ିବାକୁ ପଡିବ ।'

ଏମିତି ପ୍ରଶ୍ନ ଉତ୍ତରରେ ଗୋଟିଏ ପରେ ଗୋଟିଏ ଦିନ ବିତିଯାଇଥିଲା । ମିଟୁ କିନ୍ତୁ କିଛି ପାଠ ଶିଖୁନଥିଲା । ନା ଘରେ ନା ସ୍କୁଲରେ । ନର୍ସରୀରୁ କେଜିକୁ ଯିବାର ପରୀକ୍ଷା ଆଉ ମାତ୍ର ସାତଦିନ ବାକି ଥାଏ । ମିତାକୁ ମିଟୁର ପ୍ରିନ୍‌ସିପାଲ ଡକାଇଲେ ଏବଂ କହିଲେ ମିଟୁ ଯଦି 'ଏ'ଠାରୁ 'ଜେଡ୍' ଯାଏ ଏବଂ 'ଏକ'ରୁ 'ଦଶ' ପର୍ଯ୍ୟନ୍ତ ଲେଖି ନ ଜାଣିବ ତା' ହେଲେ ସେମାନେ ତାକୁ ଫେଲ୍ କରିଦେବେ । ମିତା ମୁଣ୍ଡରେ ସେଦିନ ବଜ୍ର ପଡିଥିଲା । ଘରେ ଆସି ମିହିରଙ୍କୁ କହିବାରୁ ସିଏ କହିଥିଲେ ତୁମ ପୁଅ ଯଦି ଲେଖି ନଜାଣିଛି ତା' ହେଲେ ଆଉ ବର୍ଷେ ସେଇ ଶ୍ରେଣୀରେ ପଢ଼ିବ । ଆସନ୍ତା ବର୍ଷ କେଜିକୁ ଯିବ । ମିଟୁକୁ ପଢ଼ିବାକୁ ଡାକିଲାମାତ୍ରେ ସିଏ ଗୁରୁଣ୍ଡି ଗୁରୁଣ୍ଡି ଖଟ ତଳକୁ ପଳାଉଥିଲା । ଆଉ ଜବରଦସ୍ତି ଟାଣିକି ଆଣିଲେ କାନ୍ଦି କାନ୍ଦି ଧକାଏ । ପାଠ ପଢ଼ାଇବା ପାଇଁ ଟାଣ କରିଥିବା ମିତାର ମନ ପୁଅ କୁହର ଉଷ୍ମତାରେ ଲହୁଣୀ ପରି ନରମ ହୋଇଯାଏ । କାନ୍ଦି ଥିବାରୁ ମିଟୁ ହାଲିଆ ହୋଇ ଶୋଇପଡେ । ମିହିର ବି ଅଚିନ୍ତାରେ ଘୁଙ୍ଗୁଡି ମାରି ଶୋଇ ପଡନ୍ତି । ମିତା କିନ୍ତୁ ପୁଅ ପାଠ କଥା ଭାବି ସାରା ରାତି ଉଜାଗର ରହେ ।

ମିଟୁର ପରୀକ୍ଷା ଆଉ ଦୁଇଦିନ ଥାଏ । ମିତା ସନ୍ଧ୍ୟା ସାତଟାରେ ଡାକ୍ତରଖାନାରୁ ଫେରି ହାତ ଗୋଡ ଧୋଇ ମିଟୁକୁ ଟେବୁଲ ଉପରେ ବସାଇ ସାମ୍ନା ଚୌକିରେ ବସି କହିଥିଲା, 'ପରୀକ୍ଷା ପରେ ତୋର ସବୁ ସାଙ୍ଗ ଉପରେ ଶ୍ରେଣୀକୁ ପଳାଇବେ, ତୁ ତ କିଛି ଲେଖି ଜାଣୁନୁ, ତେଣୁ ତୁ ନୂଆ ପିଲାଙ୍କ ସାଙ୍ଗେ ସେଇ ନର୍ସରୀରେ ଆଉ ବର୍ଷେ ପଢ଼ିବୁ । ତୋର ଏବେକାର ସାଙ୍ଗମାନେ ତତେ ଥଟ୍ଟା କରିବେ । ହସିବେ ଏବଂ ଗଧ ବୋଲି କହିବେ ।' ଏ କଥା ଶୁଣି ମିଟୁର କୁନି କଅଁଳିଆ ମୁହଁଟି ଚିନ୍ତାରେ ଗମ୍ଭୀର ଦିଶିଥିଲା ଏବଂ ମା'କୁ ପଚାରିଥିଲା, 'ଯଦି ମୁଁ ଏବେଠାରୁ ପଢ଼ିବି ତା' ହେଲେ ଏଇ ଦୁଇଦିନ ଭିତରେ ସବୁ ପାଠ ଶିଖି ପାରିବି ?' ମିଟୁକୁ କୋଳକୁ ଟାଣିନେଇ ମିତା କହିଥିଲା, 'ହଁ ତୁ ନିଶ୍ଚେ ଶିଖିପାରିବୁ । ମୁଁ ତତେ ଶିଖାଇବି ।' ତା ' ପରେ ମୂନଙ୍କରା ପେନ୍‌ସିଲ୍‌କୁ ମିଟୁକୁ ଧରାଇ ତା'ର କୁନି ହାତକୁ ନିଜ ହାତରେ ଧରି ଧଳା କାଗଜରେ ଗୋଟେ ଗାର ଟାଣିଥିଲା ଏବଂ ମୁଣ୍ଡୁଳା ବୁଲାଇ ଦେଇଥିଲା ଏବଂ କହିଥିଲା ତୁ ଯଦି ଏଇ ଗାର ଟାଣିବା ଓ ଗୋଲ୍ ଲେଖିବା ଶିଖିଯିବୁ ତା' ହେଲେ ସବୁ ଇଂରାଜୀ ଅକ୍ଷର ଓ ସଂଖ୍ୟା ଲେଖି ପାରିବୁ । ଗାରଟା କେବେ ସିଧା ଠିଆ ହୋଇଥାଏ ତ କେବେ ଟେଢ଼ା ଆଉ କେବେ ଶୋଇଥାଏ । ଗୋଲଟା କେବେ କେବେ ଅଧା ଭଳିଆ ଲମ୍ବାଳିଆ ହୋଇଥାଏ ବୋଲି ବୁଝାଇଥିଲା । ମୁହଁରେ ଡାକି ଡାକି ତା'ର ହାତ ଧରି ମିତା ଲେଖି ଚାଲିଲା 'ଏ' ଠାରୁ 'ଜେଡ୍' ଏବଂ 'ଏକ୍' ଠାରୁ 'ଦଶ' । ବାରମ୍ବାର, ବାରମ୍ବାର । ଆଉ ସତରେ ଦୁଇଦିନରେ ମିଟୁ ସେ ସବୁ ଲେଖିବା ଶିଖି ଯାଇଥିଲା । ପରୀକ୍ଷା

ସରିବାର ସାତଦିନ ପରେ ହାଲ୍‌କା ନୀଳ ରଙ୍ଗର ରିପୋର୍ଟ କାର୍ଡ ଧରି ମିଟୁ ବାହାରିଥିଲା ସ୍କୁଲ୍ ଫାଟକରୁ । ସେଦିନ ମିତା ଯାଇଥିଲା ତାକୁ ସ୍କୁଲ୍‌ରୁ ଆଣିବାକୁ । ମିଟୁ ହାତରୁ କାର୍ଡଟି ମିତା ନେଇ ଦେଖିଥିଲା । କାର୍ଡ ଉପରେ ଲେଖାଥିଲା 'ମୋର ପ୍ରଥମ ରିପୋର୍ଟ କାର୍ଡ' ତା' ତଳକୁ ଟୋପି ପିନ୍ଧା ଗୋଟେ କୁନି ପିଲାର ଛବି ଅଙ୍କା ହୋଇଥିଲା । ସବା ତଳେ ମିଟୁର ଭଲ ନାଁ 'ଅଙ୍କୁର ମିଶ୍ର' ଲେଖାଥିଲା । ଥର ଥର ହାତରେ କାର୍ଡ ଖୋଲିଥିଲା ମିତା । ଭିତରେ ଲେଖାଥିଲା 'ପ୍ରମୋଟେଡ୍ ଟୁ କେଜି ୱାନ୍' ଏବଂ ତଳେ ପ୍ରିନ୍‌ସିପାଲଙ୍କ ହସ୍ତାକ୍ଷର । ମିତା ଆଖିରୁ ଦୁଇଟୋପା ଲୁହ ଗଡି ପଡିଥିଲା ଏବଂ ଖୁସିରେ ସିଏ ମିଟୁକୁ କାଖ କରି ଗେଲ କରି ପକାଇଥିଲା । ମିଟୁ ଏ ବର୍ଷ ଆଇ.ଆଇ.ଟି ପାଇଲା ବେଳେ ସେତିକି ଖୁସି ହୋଇନି ମିତା । ସେଇ ରିପୋର୍ଟ କାର୍ଡକୁ ଏବେଯାଏ ସାଇତି ରଖିଛି ସେ । ଯେତେବେଳେ ଆଲମିରା ଖୋଲି ଦେଖେ ତା'ର ଆଖି ଜକେଇ ଆସେ ଲୁହରେ ।

ତା'ପର ଦୁଇବର୍ଷ ମିଟୁ ଆଉ ହଇରାଣ କରି ନଥିଲା ପଢ଼ିବା ପାଇଁ । କିନ୍ତୁ ଯେତେବେଳେ ମିଟୁ ପବ୍ଲିକ୍ ସ୍କୁଲ୍‌ରେ ନାଁ ଲେଖାଇଥିଲା ଏବଂ ସେଠି ଓଡ଼ିଆ ପଢ଼ା ଆରମ୍ଭ ହୋଇଥିଲା ସେତେବେଳେ ମିଟୁ ଖୁବ୍ ରାଗିଥିଲା ଏବଂ ମା'କୁ କହିଥିଲା, ତୁମେ ତ କହିଥିଲ ଖାଲି ଇଂରାଜୀ ପଢ଼ିଲେ ହୋଇଯିବ । ଓଡ଼ିଆ ପଢ଼ିବା କ'ଣ ଦରକାର ? ଛଅ ବର୍ଷର ପୁଅକୁ ମିତା ବୁଝାଉଥିଲା, ସିଏ ଯେତେବେଳେ ମାମୁଙ୍କ ଘରକୁ, କକେଇଙ୍କ ଘରକୁ ଯିବ ସେଠୁ ବସ୍‌ରେ ଘରକୁ କେମିତି ଆସିବ ? ବସ୍ ଉପରେ ତ ଓଡ଼ିଆରେ ଜାଗା ନାଆଁ ଲେଖା ହୋଇଥାଏ । ଏବେ ସିନା ମା' ବାପା ଅଛନ୍ତି, ପଢ଼ିଦେଉଛନ୍ତି, ବଡ ହେଲା ପରେ ଯେବେ ଏକା ଏକା ଯିବାକୁ ପଡ଼ିବ ସେତେବେଳେ କ'ଣ କରିବ ? ପୁଣି ଜେଜେମା', ଆଈ ଓଡ଼ିଆରେ ଚିଠି ଲେଖୁଛନ୍ତି । ଏବେ ସିନା ମିତା ତା' ପାଇଁ ପଢ଼ି ଦେଉଛି, କିନ୍ତୁ ନିଜେ ନିଜେ ପଢ଼ିଲେ ଖୁସି ଲାଗିବ ଏବଂ ଚିଠି ବି ସେମାନଙ୍କ ପାଖକୁ ଓଡ଼ିଆରେ ଲେଖି ପାରିବ । ସେମାନେ କେତେ ଖୁସି ହେବେ । କିନ୍ତୁ ଏ ଉତ୍ତର ସବୁ ମିଟୁ ମନକୁ ଜମାରୁ ଯାଏନି ।

ପଢ଼ିଲାବେଳେ ଯେତେ ପ୍ରକାର ପ୍ରଶ୍ନ ପଚାରି ଅସ୍ତବ୍ୟସ୍ତ କରି ପକାଏ ମିତାକୁ । ଏ ଅକ୍ଷରକୁ 'ଅ' କାହିଁକି କୁହାଯାଉଛି ? 'ର' କହିଲେ କ'ଣ ହେବ ? ଇଂରାଜୀରେ ତ ମାତ୍ରା ନାହିଁ କି ଯୁକ୍ତାକ୍ଷର ନାହିଁ, ଓଡ଼ିଆରେ କାହିଁକି ଅଛି ? ମିତା ଯଦି କହିବ ସବୁଠାରୁ ପୁରୁଣା ଅକ୍ଷର ଓ ଭାଷା ହେଉଛି ସଂସ୍କୃତ ଏବଂ ସେଥିରୁ ସବୁ ଭାରତୀୟ ଭାଷାର ଉତ୍ପତ୍ତି । ସେଥିପାଇଁ ଯୁକ୍ତାକ୍ଷର ଅଛି, ତେବେ ସିଏ ପଚାରିବ ତା' ହେଲେ ଟିଭିରେ ଇଂରାଜୀରେ କାହିଁକି କଥା ହେଉଛନ୍ତି ସଂସ୍କୃତରେ ନ ହେଇ ? ତଥାପି ମିତା ଧୈର୍ଯ୍ୟ ହରାଏନି ଏବଂ ମିଟୁ ଦେହରେ ଟିପ ଛୁଆଁଏନି । 'ମୋ ଛବି ବହି' ର ପୃଷ୍ଠା ଲେଉଟାଇ ମିଟୁ ପଚାରିବ ଶଗଡ଼ ଚକ

ଏତେ ବଡ ହେଇ ଧୀରେ କାହିଁକି ଚାଲେ ? କାର୍‌ର ଚକଟା ଏତେ ଛୋଟ ହେଇ ଶୀଘ୍ର କେମିତି ଚାଲେ ? ବହିରେ ଯେଉଁ ଆଈଙ୍କର ଚିତ୍ର ଦେଇଛି ସେଥିରେ ତାଙ୍କର ଦାନ୍ତ ନାହିଁ, କିନ୍ତୁ ତା' ଆଈଙ୍କର କେମିତି ଦାନ୍ତ ଅଛି ? ସବୁ ପ୍ରଶ୍ନର ଉତ୍ତର ଦେଇ ମିତାର ବାକ ବାହାରିଯାଏ, ଆଉ ପାଠପଢ଼ା ସେଇଠି ଅଟକିଯାଏ । ଜବରଦସ୍ତି ପଢ଼ାଇଲେ ମିଟୁକୁ ଶୋଷ ଲାଗେ । ଭୋକ ଲାଗେ । ପେନ୍‌ସିଲ୍ ମୂନ ଭାଙ୍ଗିଯାଏ । ମିତା କେତେ ଲୋଭ ଦେଖାଏ ପୁଅକୁ, ଓଡ଼ିଆ ପଢ଼ିଲେ ସିଏ ତା' ପାଇଁ ଖେଳଣା, ଚକ୍‌ଲେଟ୍, ଡ୍ରେସ୍ ଆଦି କିଣିଦେବ । ମିଟୁକୁ ପାଠ ନ ପଢ଼ିବାଟା ବେଶି ଲୋଭନୀୟ ମନେହୁଏ । ହଠାତ୍ ଦିନେ ମିତା ଜାଣିପାରିଲା ମିଟୁ ଗପ ଶୁଣିବାକୁ ଖୁବ୍ ଆଗ୍ରହ ପ୍ରକାଶ କରୁଛି । ତା' ପରେ ସିଏ ପୁଅ ସାଙ୍ଗେ ସାଲିସ୍ କରିଥିଲା ଯଦି ମିଟୁ ଦିନକୁ ଅଧଘଣ୍ଟାଏ ଓଡ଼ିଆ ପଢ଼ିବ ତା' ହେଲେ ମିତା ତାକୁ ଶୋଇଲାବେଳେ ଦୁଇଟି ଗପ କହିବ । ତା' ପରେ ଆରମ୍ଭ ହୋଇଥିଲା ମିଟୁର ଓଡ଼ିଆ ପଢ଼ା । ପିଲାଦିନେ ପଢ଼ିଥିବା ଡକ୍ଟର କୁଞ୍ଜବିହାରୀ ଦାଶଙ୍କ 'ଲୋକଗଳ୍ପ' ଯେ ମିତାର ଏତେ କାମରେ ଆସିବ ତାହା ସ୍ୱପ୍ନରେ ସୁଦ୍ଧା ଭାବି ନଥିଲା ସିଏ । ମିଟୁ ପଢ଼ିଚାଲିଲା ଏବଂ ମିତା କହିଚାଲିଲା କସ୍ତୁରୀ ବେଙ୍ଗ, ଅଠର ଓଲା, ଟିପାଟିପିରୁ ଆରମ୍ଭ କରି ବିରାଡି ବୈଷ୍ଣବ କଥା ଯାଏ । ମିତାର ଗପ ପେଡ଼ି ସରି ସରି ଆସୁଥାଏ ଏବଂ ମିଟୁର ପାଠ ଆଗକୁ ଆଗକୁ ବଢ଼ି ଚାଲିଥାଏ । ଶେଷରେ ମିଟୁ ଓଡ଼ିଆକୁ ଖୁବ୍ ସୁନ୍ଦର ଭାବରେ ଅଭିଆର କରିନେଇଥିଲା ।

'ମା', ଚିଠି ଲେଖିସାରିଲ ?' ମିଟୁ ସ୍କୋର୍ ଦେଖିସାରି ମା' ପାଖକୁ ଆସୁ ଆସୁ ପଚାରିଲା ।

'ହଁ ଲେଖି ଦେଇଛି, ପଢ଼୍ ତ', ଚମକି ପଡ଼ି ମିତା କହିଥିଲା

ମିଟୁ ପଢ଼ିଲା ମା'ଙ୍କ ଚିଠି-

ମିଟୁବାବା, ତୁ ଯେବେ କୁନିଟେ ହେଇଥିଲୁ । ମୁଁ କେତେ ଧୈର୍ଯ୍ୟ ଧରି, ପରିଶ୍ରମ କରି ତତେ ପାଠ ପଢ଼ାଇଥିଲି । ତୁ ମତେ ଇଣ୍ଟରନେଟ୍ ଶିଖାଇଲାବେଳେ ଏତେ ଅଧୈର୍ଯ୍ୟ ହେଲେ ଚଳିବ? ତୁ ଏତେ ଶୀଘ୍ର ଶୀଘ୍ର କହୁଛୁ ବୋଲି ମୁଁ ଧରିପାରୁନି । ମୁଁ ପରା ବୁଢ଼ୀ ହୋଇଗଲିଣି । ତୁ ଯଦି ଟିକେ ସମୟ ଦେଇ ଶିଖାଇବୁ ମୁଁ ନିଶ୍ଚେ ଶିଖିକି ତୋ ପାଖକୁ ଇ-ମେଲ୍ ପଠାଇବି ଏବଂ ତୋ ସାଙ୍ଗେ ଚ୍ୟାଟ୍ କରିପାରିବି ।

ଇତି ତୋ ମା'

ଚିଠିଟା ପଢ଼ିସାରି ମିଟୁ କ'ଣ ଭାବିଲା କେଜାଣି ଫିକ୍ କରି ହସିଦେଇ କହିଲା- 'ଠିକ୍ ଅଛି । ଏବେ ମାଉସ୍‌କୁ ସେଭ୍ ପାଖକୁ ଆଣି କ୍ଲିକ୍ କର ।'



# ମୋ ଜୀବନ ପଛେ ନର୍କେ ପଡିଥାଉ

ଶେଷ ରୋଗୀଟିକୁ ଦେଖିସାରି ହାତଘଣ୍ଟାକୁ ଚାହିଁଲି । ରାତି ଆଠଟା ହୋଇଥିଲା । ଶ୍ରାବଣ ମାସର ଝିପିଝିପି ବର୍ଷା ସଂଧ୍ୟାରୁ ଲାଗି ରହିଥିବାରୁ ଆଉ ରୋଗୀ ଆସିବେନି ଭାବି ମୋ କ୍ଲିନିକ୍ ରେ କାମ କରୁଥିବା ଝିଅ କୁ ତା ଘରକୁ ପଠାଇ ଦେଇ ମୁଁ କ୍ଲିନିକ୍ ଭିତର ପଟୁ ବନ୍ଦ କରି, ମଝି କବାଟ ଦେଇ ମୋ ଶୋଇବା ଘର କୁ ଆସିଲି । ଯେଉଁ ମହିଳା ଡାକ୍ତରଙ୍କ ବଦଳରେ ମୁଁ ଏଠିକୁ ଆସିଥିଲି ସିଏ ମଧ ଅବିବାହିତ ଥିଲେ । ଏହି ଘରେ ରହୁଥିଲେ । ତେଣୁ ତାଙ୍କ କହିବା ଅନୁଯାୟୀ ମୁଁ ଅନ୍ୟ ଭଡାଘର ନଦେଖି ଏଇ ଘରେ ରହିଯାଇଥିଲି । ଆଡ ହୋଇ ଦୁଇ ବଖରା ଘର । ମଝିରେ କବାଟ । ଗୋଟିଏ ବଖରା କ୍ଲିନିକ୍ ପାଇଁ ବ୍ୟବହାର କରେ ଓ ଅନ୍ୟଟି ଶୋଇବା ତଥା ବୈଠକ ଘର କାମଦିଏ । ପଛପଟେ ନିବୁଜ ବାରଣ୍ଡା । ତାର ଗୋଟେ ପଟେ ରୋଷେଇ ଘର ଓ ଅନ୍ୟପଟେ ଶୌଚାଳୟ । ଜଣେ ଚଳିବା ପାଇଁ ଯଥେଷ୍ଟ । ମୋ ଶୟନ କକ୍ଷର ବାହାର ବାରଣ୍ଡାରେ ରୋଗୀମାନେ ବସିବା ପାଇଁ ଗୋଟେ କାଠ ବେଞ୍ଚ ପଡିଥାଏ । ସକାଳେ ଓ ସଂଧ୍ୟାରେ ମୁଁ ଡାକ୍ତରଖାନା ଯାଏ । ରାତିରେ ଦୁଇଘଣ୍ଟା ପାଇଁ କ୍ଲିନିକ୍ ଖୋଲେ । କେବେ କେମିତି ଦିପହରେ ଅବା ଅତି ସକାଳୁ ରୋଗୀ ଆସିଲେ ଦେଖିନିଏ । ରୋଷେଇ ଓ ଘରକାମ କରିବା ପାଇଁ ବାହାରୁ ଦୁଇଓଳା ସ୍ତ୍ରୀ ଲୋକଟିଏ ଆସେ । ସଂଧ୍ୟାରେ ମୁଁ ଡାକ୍ତରଖାନାରୁ ଫେରିବା ପରେ ସିଏ ତା ଘରକୁ ଫେରିଯାଏ ।

ଶୀଘ୍ର କାମ ସାରିଦେବା ପାଇଁ ମୁଁ ଗୋଡହାତ ଧୋଇ ଆୟା ତିଆରି କରି ଯାଇଥିବା ରୁଟି ତରକାରୀ ବାଢ଼ି ଆଣି ଖାଇବାକୁ ପ୍ରସ୍ତୁତ ହେଲାବେଳକୁ କଲିଂ ବେଲ୍ ବାଜିଲା । ଏତେ ବର୍ଷାରେ କିଏ ଆସିଲା ଭାବି ମୁଁ ଝରକା ପଟେ ବାହାର ବାରଣ୍ଡାକୁ ଚାହିଁ ଦେଖିଲି ଓଦା ସରସର ହୋଇ ଲକ୍ଷ୍ମୀ ଓ ତାର ଝିଅ ଛିଡା ହେଇଛନ୍ତି ।

ଏଠିକୁ ଆସିବା ଦିନରୁ ମୁଁ ଲକ୍ଷ୍ମୀ କୁ ଜାଣିଛି । ସିଏ ଓ ତାର ଝିଅ ମିଶି ଏଇ ସାହିରେ କେତେ ଜଣଙ୍କ ଘରେ ବାସନ ମଜା, ଘର ଓଳା, ଲିପାପୋଛା ଆଦି କାମ କରି ପେଟ ପୋଷନ୍ତି । ପୁନିଅ ପରବରେ ମଧ କିଏ ଡାକିଲେ ମା, ଝିଅ ମିଶି ସାହାଯ୍ୟ କରନ୍ତି । ମୁଁ ଯେତେବେଳେ ଏଠିକୁ ଆସିଲି ଲକ୍ଷ୍ମୀ ଆସି ନିଜର ପରିଚୟ ଦେଇଥିଲା ଓ ମୋ ଘରେ କାମ କରିବା ପାଇଁ ଅଳି କରିଥିଲା । କିନ୍ତୁ ମୁଁ ଆଗରୁ ଏଇ ଘରେ କାମ କରୁଥିବା ସ୍ତ୍ରୀ ଲୋକଟିକୁ କଥା ଦେଇ ସାରିଥିବାରୁ ଦୁଃଖିତ ହୋଇଥିଲି ଓ କହିଥିଲି ଯଦି କୌଣସି କାରଣରୁ ସେହି ସ୍ତ୍ରୀ

ଲୋକଟି କାମ ଛାଡ଼ିଦିଏ ତାହାଲେ ମୁଁ ନିଶ୍ଚେ ଲକ୍ଷ୍ମୀକୁ ରଖିବି । ବାଟରେ ଘାଟରେ ଦେଖାହେଲେ ଲକ୍ଷ୍ମୀ ନମସ୍କାର କରେ । ଏବଂ ତା' ଛୋଟ ପୁଅ, ଝିଅକୁ ଓଳିଗି ହେବା ପାଇଁ କହେ । ତା'ର କିମ୍ବା ପିଲାମାନଙ୍କର ଦେହ ଖରାପ ହେଲେ ଅନେକଥର ଘରକୁ ଆସି ଔଷଧ ପତ୍ର ନେଇଯାଏ ଓ ଘରେ କିଛି କାମ ଥିଲେ କରିଦିଏ ମଧ୍ୟ । ସେତିକିବେଳେ କଥାରେ କଥାରେ ତାର ଦୁଃଖ ସବୁ ମୋ ଆଗରେ ଗପିଛି । ନୂଆ ବାହାହେଲାବେଳେ ତାର ସ୍ୱାମୀ ତାକୁ କେତେ ଭଲ ପାଉଥିଲା । ତାର ବର ମୂଲ ଲାଗି ଯାହା ଆଣୁଥିଲା ସେଥିରେ ସେମାନେ କେତେ ଖୁସିରେ ଖାଇପିଇ ଚଳୁଥିଲେ । ତା ପରେ ତାର ଝିଅ, ପୁଅ, ଜନ୍ମ ହେଲେ । ପେଟ ବଢ଼ିଲାରୁ ଅଭାବ ହେଲା । ଗାଁର ମଜୁରି ତାକୁ ପୋଷାଇଲା ନାହିଁ । ତଥାପି ତା' ସ୍ୱାମୀ ଲକ୍ଷ୍ମୀକୁ କାହାଘରେ ପାଇଟି କରିବାକୁ ପଠାଇନଥିଲା । ଦିନେ କାହାଠାରୁ ଶୁଣିଲା କଟକରେ ମୂଲିଆ ମାନଙ୍କୁ ଦିନକୁ ପଚିଶ ଟଙ୍କା ମିଳୁଛି । ସ୍ତ୍ରୀ ପିଲାଙ୍କୁ ଭଲରେ ରଖିବା ପାଇଁ ସିଏ କଟକ ଚାଲିଯାଇଥିଲା । ପ୍ରଥମେ ପ୍ରଥମେ ପ୍ରତ୍ୟେକ ରବିବାର ଜିନିଷ ପତ୍ର ଓ ଟଙ୍କା ଧରି ସିଏ ଗାଁକୁ ଆସୁଥିଲା । ତା ପରେ ପନ୍ଦର ଦିନକୁ ଥରେ ଆସିଲା । ଧୀରେ ଧୀରେ ଗାଁକୁ ଆସିବା ତାର କମିଗଲା ଓ ଶେଷରେ ଆଉ ଜମା ଆସିଲାନି । କଟକ କୁ ଯିବା ଆସିବା କରୁଥିବା ଲୋକଙ୍କ ଠାରୁ ଲକ୍ଷ୍ମୀ ଶୁଣିଲା ସିଏ କୁଆଡେ ସେଠି ରିକ୍ସା ଚଳାଉଛି ଓ ଗୋଟେ ସ୍ତ୍ରୀ ଲୋକ ରଖିଛି । ସେ କଥା ସତ କି ମିଛ ପରଖିବାକୁ ଲକ୍ଷ୍ମୀ କଟକ ଯାଇନଥିଲା । ପାଞ୍ଚ ବରଷର ଝିଅ ଓ ଦୁଇବର୍ଷର ପୁଅ ତୁଣ୍ଡରେ ଆହାର ଦେବା ପାଇଁ ସିଏ ଘରୁ ଦାଣ୍ଡକୁ ବାହାରିଥିଲା ଓ ଗାଁ ଲୋକଙ୍କ ଘରେ କାମ କରିବା ଆରମ୍ଭ କରି ଦେଇଥିଲା । ଏକା ସାଂଗରେ ସମସ୍ତେ ଘରୁ ବାହାରନ୍ତି । ଟିକି ଝିଅଟି କୁନି ଭାଇକୁ ଜଗେ ଓ ଲକ୍ଷ୍ମୀ ବାବୁ ମାନଙ୍କ ଘରେ କାମ କରେ । ଏମିତି ହେଇ ଆଠ ବର୍ଷ ବିତି ଗଲାଣି । ଆଜିକାଲି ଲକ୍ଷ୍ମୀ ସାଂଗରେ ତାର ଝିଅ ମିଶି ତାକୁ ସାହାଯ୍ୟ କରେ । ଲକ୍ଷ୍ମୀର ସୁଧାର ସ୍ୱଭାବ ଯୋଗୁ ସମସ୍ତେ ତାକୁ ସ୍ନେହ କରନ୍ତି ।

ବୋଧହୁଏ ବିଶେଷ କିଛି ଅସୁବିଧା ହେଇଛି ଯାହାପାଇଁ ଏମିତି ବର୍ଷାରାତିରେ ଭିଜିଭିଜି ଚାଲି ଆସିଛି ଲକ୍ଷ୍ମୀ । ଏମିତି ଅବେଳଟାରେ ସିଏ ଅନେକଥର ଆସି ମୋ ପାଖରୁ ଟଙ୍କା ଧାର ନିଏ ଓ ତାର କଥା ରଖି ଠିକ୍ ସମୟରେ ଫେରାଇ ମଧ୍ୟ ଦିଏ । ବାଢ଼ିଥିବା ରୁଟି ତର୍କାରୀ ଉପରେ ଥାଳିଟେ ଘୋଡାଇ ଦେଇ ମୁଁ କବାଟ ଖୋଲିଲି ।

କବାଟ ଖୋଲୁ ଖୋଲୁ ଲକ୍ଷ୍ମୀ ନଇଁ ପଡି ମୋ ଗୋଡ଼କୁ ଧରି ସୁଁ ସୁଁ ହୋଇ କାନ୍ଦିବାରେ ଲାଗିଲା । ଦୁଇ ହାତରେ ତକୁ ଉଠାଇ ମୁଁ ତାକୁ କାନ୍ଦିବାର କାରଣ ପଚାରିଲି ଏବଂ ସିଏ ଯାହା କହିଲା ସେଥିରେ ମୁଁ ହତବାକ୍ ହୋଇଗଲି । ତା ଝିଅ ଆଡେ ଅନାଇ ଦେଖିଲି, ପତଳା, କଳା ହେଇ ସାଢ଼େ ଚାରିଫୁଟର ନହନହକା ଝିଅଟିଏ । ଦିଶୁଛି ଦଶ ବର୍ଷର ପିଲାଟେ ପରି । ସିଏ ଯେ ବଡ ହେଲାଣି ଏକଥା କେହି ବିଶ୍ୱାସ କରିବେନି ଏବଂ ତାକୁ ଦେଖିଲେ ଯେ

କାହା ମନରେ ଖରାପ ଭାବନା ଆସିପାରେ ଏ କଥାମୁଁ କଳ୍ପନା କରିପାରିଲିନି । ତା' ଉପରେ ପୁଣି ପାଶବିକ ଅତ୍ୟାଚାର କରା ହେଇଛି ଓ ଅତ୍ୟାଚାର କରିଥିବା ଲୋକ ପୁଣି ଅନ୍ୟ କେହି ନୁହେଁ ଏ ଗାଁର ସରପଞ୍ଚ ! ଯିଏ କି ଗାଁ ଲୋକଙ୍କୁ ନ୍ୟାୟ ଦେବାପାଇଁ ସେହି ପଦବୀରେ ଅଧିଷ୍ଠିତ ଓ ଯାହାଙ୍କର ବୟସ ପଚାଶରୁ ଉର୍ଦ୍ଧ୍ୱ । ନିକଟ ଅତୀତରେ ସିଏ ଅଜା ହେବାର ସୌଭାଗ୍ୟ ଅର୍ଜନ କରିଛନ୍ତି । ମନ ମୋର ଘୃଣାରେ ଭରିଗଲା । ଲକ୍ଷ୍ମୀ କହିବା ଅନୁସାରେ ସିଏ ସରପଞ୍ଚଙ୍କ ଘରେ ପ୍ରାୟ ପାଞ୍ଚବର୍ଷ ହେଲାଣି କାମ କରୁଛି । ଏଇ ଖରାଦିନେ ସରପଞ୍ଚଙ୍କ ପତ୍ନୀ ତାଙ୍କ ଭାଇଙ୍କ ଝିଅ ବିଭାଘରରେ ଯୋଗଦେବା ପାଇଁ ପିଲାମାନଙ୍କ ସାଂଗରେ ପିତ୍ରାଳୟ ଯାଇଥିଲେ । ଦୁର୍ଭାଗ୍ୟକୁ ସେହି ସମୟରେ ଲକ୍ଷ୍ମୀକୁ ଜର ହେଇଥିଲା ଓ ସିଏ କାମ ବନ୍ଦ କରିବାରୁ ସରପଞ୍ଚ ମହାଶୟ ବିରକ୍ତ ହୋଇ କୌଣସି ଏକ ମୂଲିଆ ହାତରେ ଖବର ପଠାଇଥିଲେ ଝିଅକୁ ପଠାଇ ଘର କାମ କରାଇବା ପାଇଁ । ସରପଞ୍ଚଙ୍କୁ ଅବିଶ୍ୱାସ ନକଲେ ମଧ ବଢ଼ିଲା ଝିଅକୁ ଏକୁଟିଆ ପଠାଇବା ଉଚିତ୍ ମନେ ନକରି ଛୋଟ ଭାଇ ସାଂଗରେ ତାକୁ କାମ କରିବା ପାଇଁ ଲକ୍ଷ୍ମୀ ତାକୁ ପଠାଇଥିଲା । ଦୁଇଦିନ ପରେ ଲକ୍ଷ୍ମୀ ଦେହ ଠିକ୍ ହେଇଯାଇଥିଲା ଓ ସିଏ ପୂର୍ବପରି ଝିଅକୁ ସାଂଗରେ ଧରି କାମ କରି ଯାଇଥିଲା ।

ଏବେ ଝିଅର ଦେହ ଖରାପ ହେବାରୁ ସିଏ ସନ୍ଦେହ କରି ତାକୁ ପଚାରିଥିଲା ଓ ତା' ଝିଅ ସବୁକଥା ଖୋଲି ମା ଆଗରେ କହିଥିଲା-କେମିତି ସରପଞ୍ଚ ସେଇ ଦୁଇଦିନ ସାନଭାଇକୁ ବଲ ଦେଇ ତାକୁ ଅଗଣାରେ ଖେଳିବାକୁ କହିଥିଲେ ଏବଂ ଏ ସବୁ କଥା କାହାକୁ ନ କହିବା ପାଇଁ ବାରମ୍ବାର ତାକୁ ତାଗିଦ କରିଥିଲେ । ଯଦି ଏ କଥା ସିଏ କାହା ଆଗରେ ପ୍ରଘଟ କରିବ, ତାହାଲେ ସରପଞ୍ଚ ଲକ୍ଷ୍ମୀକୁ ଗାଁରୁ ବାହାର କରିଦେବେ ବୋଲି ଡରାଇଥିଲେ ।

ଏତିକି କହିସାରି ଲକ୍ଷ୍ମୀ ପୁଣି ଥରେ ମୋ ଗୋଡତଳେ ପଡି ଭୋ ଭୋ କାନ୍ଦି ତାର ଝିଅକୁ ଏ ବିପଦରୁ ଉଦ୍ଧାର କରିବାକୁ କହିଲା ।

ମୋର ମନେ ପଡ଼ିଲା ଛଅ, ସାତ ମାସ ତଳର ଘଟଣା । ଗାଇନିକ୍‌ରେ ପିଜି କରି ସାରି ପ୍ରଥମ ସରକାରୀ ଚାକିରୀ ରେ ଯୋଗ ଦେବାକୁ ବେଡିଂପତ୍ର ବାନ୍ଧି ବାପାଙ୍କ ସାଂଗେ ଘରୁ ବାହାରିଲା ବେଳେ ବୋଉ ମତେ ଘର ଭିତରକୁ ଡାକି ନେଇ କହିଥିଲା-ମତେ ତୁ କଥା ଦେ-କେବେହେଲେ ଭ୍ରୂଣ ହତ୍ୟା କରିବୁନି । ହିନ୍ଦୁମତ ଅନୁସାରେ ସିଏ ମହାପାପ । ବୋଉ ସହିତ ଏକମତ ହୋଇ ମୁଁ ତାକୁ କହିଥିଲି-ଯିଏ ପାପ କରିବ ସିଏ ତାହା ଭୋଗ କରିବ । ଅନ୍ୟମାନଙ୍କ ପଦସ୍ଖଳନ ପାଇଁ ମୁଁ କାହିଁକି ପାପ କରିବାକୁ ଯିବି ? ତେଣୁ ତୁ ବ୍ୟସ୍ତ ହୁଅନା । ମୁଁ କୌଣସି ପରିସ୍ଥିତିରେ ସେ କାମ କରିବିନି । ମୋ କଥା ଶୁଣି ବୋଉ ଆଶ୍ୱସ୍ତ ହୋଇଥିଲା ।

ସରକାରୀ ବାସଗୃହରେ ମତେ ଛାଡ଼ି ଦେଇ ବାପା କଟକ ଫେରି ଆସିଥିଲେ । ଚାକିରୀରେ ଯୋଗ ଦେବାର ଦୁଇଟି ସପ୍ତାହ ହେଇଥିବ । ମୁଁ ରାତି ନ'ଟା ବେଳକୁ ଖିଆପିଆ ସାରି ଶୋଇବାକୁ ଉଦ୍ୟତ ହେଲାବେଳେ ମୋ କବାଟରେ କିଏ କରାଘାତ କଲା ଓ ତା'ସହିତ ମତେ ଶୁଭିଲା କବାଟ ଖୋଲିବା ପାଇଁ କହୁଥିବା ଏକ କ୍ଷୀଣ ନାରୀର ସ୍ୱର । ନାରୀ କଣ୍ଠ ଶୁଣି ମୁଁ କବାଟ ଖୋଲିଥିଲି ଓ ସାମନା ରେ ଦେଖିଥିଲି ଆଭିଜାତ୍ୟ ପୂର୍ଣ୍ଣ ଜଣେ ମଧ ବୟସ୍କା ବିଧବା ମହିଳା ଓ ସାଂଗରେ ଦରଫୁଟା ଫୁଲଟେ ପରି କଅଁଳ ଛନ୍ ଛନ୍ ଅତି ସୁନ୍ଦର ତେର ଚଉଦ ବର୍ଷର କିଶୋରୀଟିଏ । ଗାଁରେ ଏମିତି ସୁନ୍ଦରୀ ଝିଅ ଥାଆନ୍ତି ବୋଲି ମୁଁ କଳ୍ପନା କରି ପାରିଲିନି । ଦୁଧ ଅଳତା ରଂଗର ଲହୁଣୀ ପିତୁଳା ଭଳି ଚେହେରା । ସତେ ଯେମିତି ସ୍ୱର୍ଗର ଅପ୍‌ସରାଟିଏ !

ସେମାନଙ୍କୁ ମୁଁ ଘର ଭିତରକୁ ଡାକିଥିଲି । ଘର ଭିତରକୁ ପଶିଆସି ଭଦ୍ରମହିଳା ମୋ ହାତରେ ବିଡାଏ ନୋଟ୍ ଧରାଇ ଦେଇ ମତେ ଯାହା କରିବା ପାଇଁ ଅନୁରୋଧ କଲେ ସେଥିରେ ମୁଁ ଉତ୍ୟକ୍ତ ହୋଇ ତାଙ୍କ ଠାରୁ ହାତ ଛଡାଇ ଆଣି କହିଥିଲି-ଆପଣ ଏ ସବୁ ନ କରି ବରଂ ଯେଉଁ ଲୋକ ଏଥିପାଇଁ ଦାୟୀ ତା ସହିତ ଝିଅର ବିଭାଘର ଶୀଘ୍ର କରାଇ ଦିଅନ୍ତୁ ।

ବିକଳରେ ମତେ ଚାହିଁ ସିଏ କହିଥିଲେ-ଏହା ସମ୍ଭବ ନୁହେଁ । ତା'ପରେ ବାଷ୍ପରୁଦ୍ଧ କଣ୍ଠରେ କହିଥିଲେ ସିଏ ଏଠିକାର ଜଣେ କୁଳୀନ ବ୍ରାହ୍ମଣ ଘରର ବୋହୂ । ମାତ୍ର ବର୍ଷେ ହେଲା ତାଙ୍କ ସ୍ୱାମୀଙ୍କର ଦେହାନ୍ତ ହେଇଯାଇଛି । ତାଙ୍କର କେବଳ ଦୁଇଟି କନ୍ୟା । ସାଂଗରେ ଆସିଥିବା କିଶୋରୀଟି ତାଙ୍କର କନିଷ୍ଠା କନ୍ୟା । ଜ୍ୟେଷ୍ଠା କନ୍ୟାର ବିଭାଘର ପ୍ରାୟ ଆଠବର୍ଷ ହେଲା ହେଇଯାଇଛି । ଯିଏ କି ଏହାଠାରୁ ଦଶବର୍ଷ ବଡ । ଜ୍ୱାଇଁ ଏଠାରୁ ଦଶ କିଲୋମିଟର ଦୂରରେ ଥିବା ତାଙ୍କ ଗାଁରେ ରୁହନ୍ତି ଓ ସିଏ ସେଠାକାର ସ୍କୁଲର ଶିକ୍ଷକତା କରନ୍ତି । ସିଏ ଦୁଇଟି ସନ୍ତାନଙ୍କ ଜନକ । ଭଦ୍ରମହିଳାଙ୍କ ସ୍ୱାମୀଙ୍କର ଦେହାନ୍ତ ହୋଇଯିବା ପରଠାରୁ ମଝିରେ ମଝିରେ ଜ୍ୱାଇଁ ଆସି ଏଠାକାର ଜମିବାଡି ବୁଝୁଛନ୍ତି । ଭଦ୍ରମହିଳା ପ୍ରାୟ ଘରେ ହିଁ ରହନ୍ତି । କେବଳ ସୋମବାର ଦିନ କିଛି ସମୟ ପାଇଁ ଶିବ ମନ୍ଦିର ଯାଆନ୍ତି । ତା ପରେ ସିଏ ଆଉ କିଛି ନକହି କାନ୍ଦିବା ଆରମ୍ଭ କରିଦେଇଥିଲେ ଓ କିଶୋରୀ ଝିଅଟି ଦୋଷୀ ପରି ତଳକୁ ମୁହଁ ପୋତି ଛିଡା ହୋଇ ରହିଥିଲା ।

ମୁଁ ତାଙ୍କ ଦୁଃଖ ହୃଦୟଙ୍ଗମ କରିପାରୁଥିଲେ ବି ବୋଉକୁ ପ୍ରତିଶ୍ରୁତି ଦେଇଥିବାରୁ ମୋ ପାଖରେ ଆଉ କୌଣସି ଚାରା ନଥିଲା । ତେଣୁ ବାଧ ହୋଇ ମୁଁ ତାଙ୍କୁ କହିଥିଲି-'ମୁଁ ଏ ବିଷୟରେ ଆପଣଙ୍କୁ କୌଣସି ସାହାଯ୍ୟ କରି ପାରିବିନି । କାରଣ ମୁଁ ଏ କାମ ନ କରିବା ପାଇଁ ଜଣକ ପାଖରେ ପ୍ରତିଜ୍ଞାବଦ୍ଧ । ତେଣୁ ଆପଣ ଝିଅକୁ ନେଇ କଟକ ଚାଲିଯାଆନ୍ତୁ ସେଠାରେ ସବୁ ବ୍ୟବସ୍ଥା ହୋଇଯିବ ।' ମୋ କଥା ଶୁଣି ସିଏ କିଛି ସମୟ ଚୁପ୍‌ଚାପ୍ ଠିଆ ହେଇରହିଲେ ଓ ଆଉ କିଛି ନକହି କୁରାକାନି ରେ ମୁହଁ ପୋଛି ଝିଅର ହାତଧରି ଟାଣି ନେଇ ଚାଲି ଯାଇଥିଲେ ।

ସେମାନେ ଚାଲିଗଲା ପରେ ମନଟା ମୋର ବିଷାଦରେ ଭରିଗଲା ଏବଂ ସେ ରାତିରେ ମତେ ଅନେକ ସମୟଯାଏ ନିଦ ହୋଇନଥିଲା । ସେମାନଙ୍କ କଥା ଭାବୁ ଭାବୁ ଟିକେ ଆଖି ଲାଗିଯାଇଥିଲା ଓ ମୁଁ ସ୍ୱପ୍ନ ଦେଖିଲି ସେ ଭଦ୍ରମହିଳା ମୋ ସାମନାରେ ଠିଆ ହୋଇଛନ୍ତି । ପାଖରେ ତାଙ୍କର ଝିଅ ଏବଂ ସିଏ ମୋ ଆଡେ ହାତ ଦେଖାଇ କହୁଛନ୍ତି-ଆମର ମୃତ୍ୟୁ ପାଇଁ ତୁମେ ଦାୟୀ-ତୁମେ ହିଁ ଦାୟୀ । ନିଦଟା ମୋର ଭାଂଗି ଯାଇଥିଲା ଓ ମତେ କେମିତି ଗୋଟେ ଅଣ ନିଃଶ୍ୱାସୀ ଲାଗିଲା । ପାଣି ଗ୍ଲାସେ ପିଇଦେଇ ମୁଁ ଶୋଇବାକୁ ଚେଷ୍ଟା କଲି ।

ସକାଳ ନ'ଟାରେ ଡାକ୍ତରଖାନା ଯାଇ ଶୁଣିଲି ଯେ ଏ ଗାଁର ମୁଖିଆ ସ୍ୱର୍ଗତ ମିଶ୍ର ବାବୁଙ୍କ ପତ୍ନୀ ଓ ତାଙ୍କ ସାନ ଝିଅ ବିଷ ଖାଇ ଘରେ ମରିକି ପଡିଛନ୍ତି । ତାଙ୍କ ଘରକୁ ପୋଲିସ୍ ଆସିଛି ଓ ସେମାନଙ୍କ ଶବ ବ୍ୟବଚ୍ଛେଦ ହେବ । ସେମାନଙ୍କ ମୃତ୍ୟୁ ପାଇଁ କୁଆଡେ ତାଙ୍କ ଜ୍ୱାଇଁ ଦାୟୀ ବୋଲି ଗାଁ ଲୋକେ କଥାବାର୍ତ୍ତା ହେଉଛନ୍ତି । ଏ କଥା ଶୁଣିଲା ପରେ ମୁଁ ଆଉ କାମ କରିପାରିନଥିଲି । ଘରକୁ ଚାଲିଆସିଥିଲି ଓ ସେଠି ମଧ ରହି ପାରିନପାରିଥିଲି । ସେହିଠାରେ ପୁଣି ଯାଇ ଚାକିରୀରେ ଯୋଗ ଦେବାର ସାହସ ମୋର ଆଉ ନଥିଲା ଓ ମୁଁ ଅନ୍ୟ ଜାଗାକୁ ବଦଳି ହେବାପାଇଁ ଚେଷ୍ଟା କରିଥିଲି ।

ସେଇ ଘଟଣା ପରେ ମୁଁ ସବୁବେଳେ ଭାବୁଥିଲି ପାପ ଓ ପୁଣ୍ୟର ସଂଜ୍ଞା କ'ଣ ? ସେ ଦିନ ମୁଁ ଭ୍ରୁଣ ହତ୍ୟା ନକରି ପାପ କରିବାରୁ ମୁକ୍ତି ପାଇଲି କି ? ମୁଁ ଚାହିଁଥିଲେ ସେମାନଙ୍କ ଜୀବନ ରକ୍ଷା କରି ପାରିଥାନ୍ତି । ମୁଁ କାହିଁକି ସେତେବେଳେ ଭାବି ପାରିଲିନି ଯେ ଭୁଲ ସିନା ତାଙ୍କ ଜ୍ୱାଇଁ କରିଥିଲା । କି ପାପ କରିଥିଲେ ସେ ଭଦ୍ର ମହିଳା, ତାଙ୍କ କିଶୋରୀ ଝିଅ, ବଡ ଝିଅ ଓ ଦୁଇ ନାତିମାନେ ? ମୁଁ ଚାଲି ଆସିଲା ପରେ ଆଉ ଖବର ରଖିନି । ସେ ଜ୍ୱାଇଁ କୁ ଜେଲ ହେଲା କି ନାହିଁ ଓ ତାର ସ୍ତ୍ରୀ ପିଲାମାନେ କ'ଣ କରୁଛନ୍ତି ମୁଁ ଜାଣିନି । କିନ୍ତୁ ସେଇ ଦିନଠାରୁ ପ୍ରତ୍ୟେକ ମୁହୂର୍ତ୍ତ ମୁଁ ନିଜକୁ ଧିକ୍କାର କରିଛି । ମୁଁ ପାପୀ ନ ହେବା ପାଇଁ କେତେ ସହଜରେ ଅନ୍ୟକୁ ମଝି ନଈକୁ ଠେଲି ଦେଇଛି ସତେ । ମୁଁ କେତେ ସ୍ୱାର୍ଥପର ।

ଲକ୍ଷ୍ମୀ ମୋର ଗୋଡ ଦୁଇଟି ହଲାଇ ଦେଲାରୁ ମୁଁ ଫେରି ଆସିଲି ଅତୀତରୁ । ମନେ ମନେ ବୋଉକୁ କ୍ଷମା ପ୍ରାର୍ଥନା କରି ମୁଁ ଲକ୍ଷ୍ମୀକୁ ତଳୁ ଉଠାଇ ଆଣି କହିଲି-ବ୍ୟସ୍ତ ହୁଅନା । ମୁଁ ଅଛି, ସବୁ ଠିକ୍ ହୋଇଯିବ ।



# ପ୍ରତିରୋଧ

ରାଉରକେଲାରୁ ଭାଇନା ମିତା ପାଖକୁ ଫୋନ୍ କରିଥିଲେ ବାପା କଟକ ମେଡ଼ିକାଲରେ ଆଇ,ସି,ୟୁ, ରେ ଭର୍ତ୍ତି ହୋଇଛନ୍ତି ବୋଲି । କିଛି ସମୟ ଆଗରୁ । ବାପାଙ୍କର ଜଣେ ସାଂଗ ଫୋନ୍ କରିଥିଲେ ଭାଇନା ପାଖକୁ । ଭାଇନା, ଭାଉଜ ନିଜ ଗାଡ଼ିରେ ସେଠାରୁ ବର୍ତ୍ତମାନ ବାହାରିଛନ୍ତି । ମିତା ଓ ମିହିର, ଶିଘ୍ର ଟ୍ୟାକ୍ସି କରି ବରହମ୍ପୁର ରୁ ଯେମିତି ଚାଲି ଆସନ୍ତି । ମିତା ସାଂଗେ କଥାହେଲାପରେ ଭାଇନା ଶ୍ୱଶୁରଙ୍କ ସାଂଗେ ବି କଥା ହେଇଥିଲେ । ଏ ପଟର କଥା ଶୁଣି ମିତା ଅନୁମାନ କଲା ଭାଇନା ସେମାନଙ୍କୁ କଟକ ଆସିବାକୁ ଅନୁମତି ଦେବାପାଇଁ ଶ୍ୱଶୁରଙ୍କୁ ଅନୁରୋଧ କରୁଥିଲେ । ଶ୍ୱଶୁର ଭାଇନାଙ୍କ ସାଂଗେ କଥା ହେଇ ଫୋନ ରଖିବା ପରେ ମିତା ମିହିରଙ୍କ ପାଖକୁ କାନ୍ଦି କାନ୍ଦି ଫୋନ୍ କରି ଶିଘ୍ର ଡାକ୍ତରଖାନାରୁ ଆସିବାକୁ କହିଥିଲା । ମିତା ଫୋନ୍ ରଖି ନିଜ ବଖରାକୁ ଆସିଲାବେଳେ ଶ୍ୱଶୁର ତାକୁ ଶୁଣେଇ,ଶୁଣେଇ କହିଥିଲେ ଏବେ ମିତା ଓ ମିହିର କଟକ ଯିବେ କି ନାହିଁ ସିଏ ଚିନ୍ତା କରି କହିବେ । ସେମାନଙ୍କର ବିଭାଘର ଏବେ ବର୍ଷେ ବି ହେଇନି । ତେଣୁ ମିତା ଘରୁ କିଏ ନ ଆସି ଏମିତି ଫୋନ୍‌ରେ ଡାକିଦେଲେ ସେମାନେ ଘରକୁ ଦୌଡ଼ିଯିବାଟା ଉଚିତ ହେବନି ।

ମିତା କିଛି ନକହି ନିଜ ବଖରାକୁ ଚାଲି ଆସିଲା । ମିତା ଓ ମିହିର ଦୁହେଁ ଡାକ୍ତର, ଅଥଚ ବାପାଙ୍କ ଦେହ ଖରାପ ବେଳେ ସେମାନେ ଯାଇ ପାରିବେନି ? ମିତା କୁ କ'ଣ ପାଇଁ ତାହାଲେ ବାପା ଡାକ୍ତରୀ ପଢ଼ାଇଥିଲେ ? ବାହାଘରର ଏଗାର ମାସ ବିତିଯାଇଥିଲେ ବି ତିନି ଥର ମାତ୍ର ସିଏ ଘରକୁ ଯାଇଛି । ପ୍ରଥମ ଥର ଅଷ୍ଟମଙ୍ଗଳା ପରେ ଭାଇନା ଆସି ମିହିର ଓ ମିତାଙ୍କୁ ଘରକୁ ନେଇଥିଲେ ଓ ଶ୍ୱଶୁର ଙ୍କ କହିବା ଅନୁଯାୟୀ ମାତ୍ର ଦୁଇଦିନ ପର ବାପା ଆଣି ଛାଡ଼ି ଦେଇଥିଲେ ।

ତା ପରେ ଦଶହରା ବେଳେ ଭାଇନା ରାଉରକେଲା ରୁ ଯେତେବେଳେ କଟକ ଆସିଥିଲେ ସେତେବେଳେ ମିତା ଓ ମିହିରଙ୍କୁ ନେବା ପାଇଁ ବରହମ୍ପୁର ଆସିଥିଲେ । ସେଥର ଶ୍ୱଶୁର ମିହିରଙ୍କୁ କଟକ ଯିବା ପାଇଁ ବାରଣ କରି କହିଥିଲେ, ଏମିତି ବାରମ୍ବାର ଇସର ପସର ହେଇ ଶ୍ୱଶୁର ଘରକୁ ଯିବାଟା ଦାଣ୍ଡକୁ ସୁନ୍ଦର ଦିଶିବନି ।

ଅଗତ୍ୟା ମିତା ଏକୁଟିଆ ଭାଇନାଙ୍କ ସାଂଗେ କଟକ ଯାଇଥିଲା । ସାତଦିନ ପରେ ମିତା ଏକୁଟିଆ ଆସି ପାରିବ ବୋଲି କହିବା ସତ୍ତ୍ୱେ ବି ବାପା ଆସି ତାକୁ ଛାଡିଯାଇଥିଲେ ।

ବାପା ଯେତେବେଳେ ବରହମ୍ପୁର ମିତା ଶ୍ୱଶୁରଘରକୁ ଆସନ୍ତି ସିଏ ସେ ଦିନଟା ସାରା ଉପାସ ରହନ୍ତି କହିଲେ ଚଳେ । ସକାଳୁ ଘରୁ ବାହାରିବା ସମୟରେ ଯାହା ସରବତ

ଗ୍ଲାସେ ପିଇଥାଆନ୍ତି । ବାପା ଆମିଷ ଓ ରାଗ ମସଲାଯୁକ୍ତ ଖାଦ୍ୟ ଖାଆନ୍ତି ନାହିଁ । ତେଣୁ ହୋଟେଲ ଖାଇବା ତାଙ୍କ ପାଇଁ ସମ୍ଭବ ହୋଇ ପାରେନି । ପୁଣି ନାତି କ ନାତୁଣୀଟିଏ ନ ହେବା ଯାଏ ସିଏ କୁଆଡେ ସମୁଦୀଙ୍କ ଘରେ ପାଣି ଛୁଇଁବେନି । ତେଣୁ ମିତାକୁ ଶ୍ୱଶୁର ଘରେ ଛାଡ଼ି ସାଂଗରେ ବୋଉ ଦେଇଥିବା ଚିନି ଗୋଲା ଛେନା ଟିକେ ଖାଇ ପୁଣି ଦିନ ଦୁଇଟା ବସରେ ଘରକୁ ଫେରି ଯାଆନ୍ତି । ଆସିଲା ବେଳେ ମିତା ତାଙ୍କୁ ବାଧ କରି ପଇଡ ପାଣି, ପାଚିଲା କଦଳୀ ଖୁଆଇ ଥାଏ । ଗଲାବେଳେ ବାପା ନିଶ୍ଚେ କିଛି ଖାଉ ନଥିବେ । ରାତିରେ ଘରେ ପହଞ୍ଚିଲା ପରେ ଯାହା ଭାତ କି ରୁଟି ଖାଉଥିବେ । ବାପାଙ୍କ ଏଇ ହଇରାଣ ପାଇଁ ମିତାକୁ ଭାରି କଷ୍ଟ ଲାଗେ ।

ଗତ ଡିସେମ୍ବର ମାସରେ ସାନ ଭଉଣୀ ରିତାକୁ ଦେଖିବାପାଇଁ ବରଘର ଆସିବେ ବୋଲି ବାପା ଶ୍ୱଶୁରଙ୍କୁ ଫୋନ୍ କରି କହିଥିଲେ ଓ ଅନୁରୋଧ କରିଥିଲେ ମିହିର ଓ ମିତାଙ୍କୁ ଦୁଇଦିନ ପାଇଁ ଘରକୁ ଛାଡ଼ିବାକୁ । ଶ୍ୱଶୁର ରୋକ୍‌ଠୋକ୍ ମନା କରିଦେଇଥିଲେ । ମିହିର୍ ଯିବାର ତ ପ୍ରଶ୍ନ ନାହିଁ ଏବଂ ମିତା କୁ ସିଏ ନିଜେ ଆସିଲେ ନେଇ ଯାଇ ପାରିବେ । ତା ପରେ ଉଦାହରଣ ଦେଇଥିଲେ, ନିଜେ ସିଏ କେମିତି ପ୍ରତ୍ୟେକ ଥର ଝିଅର ଶ୍ୱଶୁର ଘରକୁ ଯାଇ ନିମନ୍ତ୍ରଣ କରି ତାକୁ ଘରକୁ ସାଂଗରେ ଆଣନ୍ତି ଓ ଛାଡନ୍ତି ।

ମିତା ବାହାଘରର ଦୁଇଦିନ ପରେ ନଣନ୍ଦଙ୍କ ବାହାଘର ହୋଇଥିଲା । ନଣନ୍ଦ ଙ୍କ ଶ୍ୱଶୁର ଘର ମିହିରଙ୍କ ଘର ଠାରୁ ଡାକେ ବାଟରେ । ସେଥିପାଇଁ ପ୍ରତ୍ୟେକ ପୂଜା ପୁନିଅରେ ଶ୍ୱଶୁର ନ ହେଲେ ମିହିର କିଏ ଜଣେ ଯାଇ ନଣନ୍ଦଙ୍କୁ ଘରକୁ ନେଇ ଆସନ୍ତି । ଫେରିବାବେଳେ କଲେଜରେ ପଢୁଥିବା ଦିଅର ମାନେ ଯାଇ ତାଙ୍କୁ ଛାଡି ଆସନ୍ତି ।

ମିତା କଥା କିନ୍ତୁ ନିଆରା । ମିତାର ତ ଗୋଟିଏ ଭାଇ । ସିଏ ପୁଣି ରହୁଛନ୍ତି ରାଉରକେଲାରେ । ଆଉ ବାପା କଟକରେ । ବାପାଙ୍କର ବୟସ ବି ଶ୍ୱଶୁରଙ୍କ ଠାରୁ ବେଶ୍ ଅଧିକ । ବାପା ଚାକିରୀରୁ ଆଠ ବର୍ଷ ହେଲାଣି ଅବସର ନେଲେଣି । ତେଣୁ ଏ ପରିଣତ ବୟସରେ ଝିଅକୁ ନେବା ଆଣିବା କରିବା ପାଇଁ ବସ ଯାତ୍ରା ତାଙ୍କ ପାଇଁ କଷ୍ଟକର ହୋଇପଡେ । ମିତାର ଭାଉଜଙ୍କ କଥା ମନେ ପଡ଼ିଲା । ପ୍ରାୟ ଯେତେଥର ଭାଇନା ଭାଉଜ ବସରେ ବା ଟ୍ରେନରେ ରାଉରକେଲାରୁ ଘରକୁ ଆସନ୍ତି ଭାଉଜ କଟକରେ ନ ଓହ୍ଲାଇ ସିଧା ଭୁବନେଶ୍ୱର ଚାଲି ଯାଆନ୍ତି ତାଙ୍କ ବାପ ଘରକୁ । ସେଠାରେ ସିଏ ଦୁଇ ଚାରିଦିନ ରହିଲା ପରେ ଭାଇନା ଯାଇ ତାଙ୍କୁ କଟକ ନେଇ ଆସନ୍ତି । କାଇଁ ଦିନେ ତ ହେଲେ ସେଥିପାଇଁ ବାପା ବୋଉ ଅଭିଯୋଗ କରିବା ଶୁଣିନି ମିତା । ବରଂ ଭାଉଜଙ୍କ ବାପା, ମାଙ୍କ ସଂଗେ ତାଙ୍କର ଖୁବ୍ ଭଲ ସମ୍ପର୍କ ।

ଜାନୁଆରୀ ମାସରେ ଯେତେବେଳେ ମାତ୍ର ସାତଟା ଦିନ ଭିତରେ ସାନ ଭଉଣୀ ରିତାର ବାହାଘର ଠିକ୍ ହେଲା ସେତେବେଳେ ବାପା ଖୁବ୍ ଅନୁନୟ ହୋଇ

ଆସିପାରୁନଥିବାରୁ କ୍ଷମା ପ୍ରାର୍ଥନା କରି ଶ୍ୱଶୁରଙ୍କୁ ବିଭାଘରରେ ଯୋଗଦାନ କରିବାକୁ ଓ ମିହିର ମିତାଙ୍କୁ କଟକ ପଠାଇବା ପାଇଁ ଅନୁରୋଧ କରିଥିଲେ । ଶାଶୁ, ଶଶୁର, ଗୋସେଇଁ ଶାଶୁ ସମସ୍ତେ ମିଶି ଆଲୋଚନା କରିବା ପରେ ନିଷ୍ପତ୍ତି ନିଆହେଇଥିଲା ଯେ ରିତାର ବିଭାଘରରେ ଯୋଗଦେବା ପାଇଁ ଏଠାରୁ କେହି ଯିବେନି । ବାପା କିମ୍ବା ଭାଇନା ଆସି ଗୁଆ ନିମନ୍ତ୍ରଣ କଲେନି । ଏହା ସେମାନଙ୍କ ପାଇଁ ଥିଲା ଖୁବ୍ ଅପମାନଜନକ । ମିତା ଭଉଣୀ ବାହାଘର କୁ ଯାଇ ପାରିବନି ଶୁଣିଲା ପରେ କାନ୍ଦି କାନ୍ଦି ଆଖିକୁ ଗେଣ୍ଡା ପରି କରିଥିଲା ।

ମିତାର କାନ୍ଦ ଦେଖି ମିହିର ଙ୍କ ମନରେ ଦୟା ଆସିଥିଲା ଓ ସିଏ ଯାଇ ଶ୍ୱଶୁରଙ୍କୁ କହିଥିଲେ ଜୋଇଁ ନିମନ୍ତ୍ରଣ ହୋଇନି ବୋଲି ସିଏ ସିନା ଯାଇ ପାରିବେନି । କିନ୍ତୁ ବାପ ଘରକୁ ଝିଅ ଯିବାରେ ତ କିଛି ଅସୁବିଧା ନାହିଁ ।

ଯେଉଁ ମିହିର ବାହୁଅ ବେଳେ ତାଙ୍କ ସାମନା କୁ ଆସିବାକୁ କୁଣ୍ଠାବୋଧ କରୁଥିଲେ ବାହାଘର ପରେ ସେଇ ମିହିରଙ୍କ ସାହାସ ଦେଖି ଶ୍ୱଶୁର ଚିତ୍କାର କରି କହିଥିଲେ-ସିଏ ତାଙ୍କର ଏକମାତ୍ର ସନ୍ତାନ ନୁହେଁ । ତାଙ୍କର ଆହୁରି ମଧ ଦୁଇପୁଅ ଅଛନ୍ତି । ଯଦି ମିତା ତାଙ୍କ କଥା ଅମାନ୍ୟ କରି ଭଉଣୀ ବିଭାଘର ପାଇଁ କଟକ ଯିବ ତାହାଲେ ସିଏ ମିହିରଙ୍କୁ ତ୍ୟଜ୍ୟପୁତ୍ର କରିଦେବେ । ଶ୍ୱଶୁରଙ୍କ ବ୍ୟବହାର ମିହିରଙ୍କୁ ଯେତେ କଷ୍ଟ ଦେଇ ନଥିଲା ତା ଠାରୁ ଅଧିକ କଷ୍ଟ ଦେଇଥିଲା ମିତାକୁ ଏବଂ ସେ କଷ୍ଟ ଥିଲା ରିତାର ବାହାଘର କୁ ନ ଯାଇ ପାରିବାର କଷ୍ଟଠାରୁ ଯଥେଷ୍ଟ ଅଧିକ ।

ଶ୍ୱଶୁର ଘରର ଏ ସବୁ କଥା ନେଇ ମିତା ବାପାଙ୍କ ପାଖକୁ କୌଣସି ଖବର ପଠାଇ ନଥିଲା । ମିତା ଭାବୁଥିଲା ସିଏ ପଛେ ବିଭାଘର ରେ ଯୋଗ ଦେବାକୁ ନଯାଉ କିନ୍ତୁ ବାହାଘରଟା କେମିତି ସୁରୁଖୁରୁ ରେ ହେଇଯାଉ । ସାତ ଦିନ ଭିତରେ ସବୁ ଯୋଗାଡ କରି ଝିଅ ବାହାଘର କରିବାଟା କିଛି କମ୍ କଥା ନୁହଁ । ସେ ପିଲା କୁଆଡେ ବାହାହେଇ ଷ୍ଟେଟ୍‌ସ ଫେରିଯିବ । ତାର ଆଉ ଛୁଟି ନଥିଲା । ତେଣୁ ଏତେ କମ୍ ଦିନରେ ବାହାଘର ଠିକ୍ କରାହେଇଥିଲା ।

ସମସ୍ତଙ୍କୁ ଚକିତ କରି କିନ୍ତୁ ବାପା ବାହାଘରର ଦୁଇଦିନ ଆଗରୁ ଆସି ପହଞ୍ଚିଥିଲେ ଗୁଆ ନିମନ୍ତ୍ରଣ ଦେଇ ଝିଅ ଜୋଇଁକୁ ସାଂଗରେ ନେଇଯିବା ପାଇଁ । ତୃତୀୟ ଥର ପାଇଁ ସିଏ ଘରକୁ ଯାଇଥିଲା । ମିତା ପାଇଁ କେତେ କଷ୍ଟ କରିନାହାନ୍ତି ବାପା ! ବର୍ତ୍ତମାନ ସିଏ ମୃତ୍ୟୁ ସହିତ ଲଢୁଛନ୍ତି କଟକ ବଡ ଡାକ୍ତରଖାନାର ଆଇ.ସି.ୟୁ.ରେ । ବୋଉ କ'ଣ କରୁଥିବ ? ସାହସ ଦେବାପାଇଁ ପାଖରେ ତାର କୌଣସି ପିଲା ନାହାନ୍ତି ! ବାପା କ'ଣ ଭବିଷ୍ୟତ କଥା ଜାଣି ପାରିଥିଲେ ? ସେଥିପାଇଁ ଆର୍ଥିକ ଅସୁବିଧା ସତ୍ତ୍ୱେ ଦୁଇ ଝିଅଙ୍କର ବାହାଘର

କରିଦେଇଥିଲେ ଗୋଟିଏ ବର୍ଷରେ ! ଯଦି ବାପାଙ୍କର ଆଜି କିଛି ହେଇଯାଏ ସିଏ ନିଜକୁ କ୍ଷମା ଦେଇ ପାରିବ ତ ?

ଏଇ ବରହମ୍ପୁର ରେ ହଷ୍ଟେଲରେ ରହି ଡାକ୍ତରୀ ପଢ଼ିବା ସମୟରେ ସିଏ ଯେ କେତେ ଥର ବସ୍‌ରେ, ଟ୍ରେନ୍‌ରେ ଚଢ଼ି କଟକ ଯାଇଛି ତାର ହିସାବ ନାହିଁ । ସିଏ ହଷ୍ଟେଲ ଛାଡ଼ିବାର ମାତ୍ର ବର୍ଷଟିଏ ହେଇଚି । ଯିଏ ଅଭିଆଡି ବେଳେ ଏକା ଏକା ଯାଇପାରୁଥିଲା ସିଏ ବାହାହେଲା ପରେ ଯାଇପାରିବନି ? ମନ ତାର ବିଦ୍ରୋହ କରି ଉଠିଲା ।

ମିତା ନିଜ ବଖରାରୁ ବାହାରକୁ ଚାହିଁ ଦେଖିଲା ମୁକ୍ତି ମଣ୍ଡପର ବ୍ରାହ୍ମଣ ମାନଙ୍କ ଭଳି ଶାଶୁ, ଗୋସେଇଁ ଶାଶୁ, ଓ ଶ୍ୱଶୁର ମିତାର ଯିବା ନ ଯିବା ଉପରେ ଆଲୋଚନା କରୁଥିଲେ । ଶ୍ୱଶୁର ପଚାରୁଥିଲେ ତାଙ୍କ ମା'କୁ ଓ ସିଏ କହୁଥିଲେ 'ଦେଖ ଯାହା ଠିକ୍ ଭାବୁଛ କର' । ତାଙ୍କ କଥା ଶୁଣି ଶାଶୁ କହିଥିଲେ, ଏ ବୟସରେ ବି ତାଙ୍କ ବାପଘରୁ ଭାଇ କି ପୁତୁରା କିଏ ନ ଆସିଲେ ତାଙ୍କୁ ତାଙ୍କ ବାପ ଘର ଜୟପୁର କୁ ଛଡା ହୁଏନି । ଏବେ କେମିତି ସେ ନିୟମ ବଦଳି ଯିବ ? ସବୁ ଶୁଣି ସାରି ଶ୍ୱଶୁର ଆଖିକୁ ସଂକୁଚିତ କରି ବିଚାରପତିଙ୍କ ପରି ନିଜର ରାୟ ଶୁଣାଇଥିଲେ-'ତାହାଲେ ମୁଁ ଭାବୁଛି ମିତା ଏବେ କଟକ ଯିବାଟା ଠିକ୍ ହେବନି ।'

ମିତା ନିଜକୁ ଆଉ ସମ୍ଭାଳି ପାରିଲାନି । ଯେଉଁ ମିତା କେବେ ଆଖିରେ ଆଖି ମିଶାଇ ଶାଶୁଙ୍କ ସାଂଗେ ଦିନେ କଥା ହେଇନଥିଲା ସିଏ କାଳିସି ଲାଗିଲା ଭଳିଆ ବିନା ଓଢଣାରେ ଚଳି ଚଳି ବାରଣ୍ଡାକୁ ଚାଲି ଆସିଲା ଓ ସମସ୍ତଙ୍କୁ ଅବାକ କରି ଶ୍ୱଶୁରଙ୍କ ମୁହଁକୁ ସିଧା ଚାହିଁ କହିବାକୁ ଲାଗିଲା-'ଆପଣ ହଁ କରନ୍ତୁ କି ନାହିଁ-ମୁଁ କଟକ ଯିବି ବାପାଙ୍କୁ ଦେଖିବାକୁ ଏକୁଟିଆ-ଆଜି-ଏଇ ମୁହୂର୍ତ୍ତରେ ।'

ଏତିକି କହି ସିଏ ନିଜ ବଖରାକୁ ଚାଲିଆସିଥିଲା । ତା ଆଖିରେ ଟୋପେ ବି ଲୁହ ନଥିଲା । ସିଏ ନିଜେ ଜାଣିପାରୁନଥିଲା କେଉଁଠୁ ଏତେ ସାହସ ଓ ଶକ୍ତି ପାଇଲା । ଆଲମାରୀ ଖୋଲି ଝିଅ ବିଦାବେଳେ ବୋଉ ଦେଇଥିବା ଟଙ୍କା ବିଡାଟା ହାତରେ ଧରିଲା । କାନ୍ଥ ଘଣ୍ଟାକୁ ଚାହିଁ ଦେଖିଲା ବାରଟା ବାଜିଛି । ଠିକ୍ ସାଢ଼େ ଗୋଟେ ରେ କଟକ ଯାଉଥିବା ଡିଲକ୍ସ ବସ ଷ୍ଟାଣ୍ଡକୁ ଆସିବ । ସିଏ ଚାଲି ଚାଲି ବସ ଷ୍ଟାଣ୍ଡ ଯାଏ ଯାଇପାରିବ ।

ବାରଣ୍ଡାରୁ ଆଉ କୌଣସି କଥାବାର୍ତ୍ତା ଶୁଭୁନଥିଲା । ସତେଯେପରି ସେମାନେ ବାକ୍‌ଶକ୍ତି ହରାଇ ବସିଥିଲେ । ଏତିକିବେଳେ ମିହିର ସ୍କୁଟର ରେ ଆସି ପହଞ୍ଚିଲେ ।

ମିହିର ଶ୍ୱଶୁରଙ୍କୁ କିଛି କହିବା ଆଗରୁ ମିତା ଶୁଣିପାରିଲା ଶ୍ୱଶୁର କହୁଛନ୍ତି-'ସମୁଦିଙ୍କ ଦେହ ଭୀଷଣ ଖରାପ । ତୁ ଶୀଘ୍ର ମିତାକୁ ସାଂଗରେ ନେଇ କଟକ ବାହାରି ଯା ।'



# ଭିନ୍ନ ସମ୍ପର୍କ

ମିତାର ସବୁ ଅଭିମାନ ଯାଇ ଠୁଳ ହେଲା ବାପାଙ୍କ ଉପରେ । ମିତା ସ୍ନାତକୋତ୍ତର ଡିଗ୍ରୀଟା ହାସଲ କରିଦେଲେ ବାପାଙ୍କର ଯେ କ'ଣ ଲାଭ ହେବ ସେ ଜମାରୁ ବୁଝି ପାରିଲା ନାହିଁ । ଡାକ୍ତରଟେ ହୋଇଥିଲେ ବି ସିଏ ତ ଦିନେ ବି ବାପାଙ୍କର ସେବା କରିନି । ଆଉ ଏବେ ବାହାସାହା ହୋଇ ଘର ସଂସାର କଲା ପରେ ନିଜ ଦାୟିତ୍ୱରୁ ମୁକ୍ତ ହୋଇ ବାପାଙ୍କ ପାଇଁ କ'ଣ କରିପାରିବ ? ମିତା ଯେତେବେଳେ କଟକ ଯିବ ଅବା ବାପା ଯେବେ ଫୋନ୍ କରିବେ ସବୁବେଳେ ସେଇ ଗୋଟିଏ କଥା, 'ଏତେ ଭଲ ପଢୁଥିଲୁ । ଖାଲି ଏମ୍.ବି.ବି.ଏସ୍ ହୋଇ ରହିଗଲୁ, ପି.ଜି.ଟା କରିଦେ ମା' । କେବଳ ବାପାଙ୍କ କଥା ରଖିବା ପାଇଁ ଏ ବର୍ଷ ମିତା ପି.ଜି. ପାଇଁ ଆବେଦନ କରିଥିଲା । ମେଡ଼ିକାଲ ପାସ୍ କରୁ କରୁ ମିତାର ବାହାଘର ହୋଇଯାଇଥିଲା ମିହିରଙ୍କ ସାଙ୍ଗେ । ବାହାଘର ପରେ ମିହିର ଚାକିରି ଛାଡ଼ି ପି.ଜି. କଲା ପରେ ପରେ ମିଟୁ ଜନ୍ମ ହେଲା । ସେଥିପାଇଁ ବାପା ଟିକେ ଚୁପ୍ ରହିଥିଲେ । ଯେମିତି ମିହିର ପୋଷ୍ଟ ଗ୍ରାଜୁଏସନ୍ ପରେ ମେଡ଼ିକାଲ୍ କଲେଜରେ ଯୋଗଦେଲେ ଓ ମିଟୁ ନର୍ସରୀ ସ୍କୁଲ ଯିବା ଆରମ୍ଭ କରିଦେଲା ପୁଣି ବାପା ତା ପଛରେ ଲାଗିଗଲେ । ବାପା ଜାଣି ପାରୁ ନାହାନ୍ତି ମିତା ଉପରେ ଘରଟା ସାରାର ଦାୟିତ୍ୱ । ମିହିର, ମିଟୁ, ଶାଶୁ ଓ ଦିଅର ଦିପୁଙ୍କ କଥା ବୁଝିସାରି ପୁଣି ଚାକିରି କରି ପଢ଼ିବାଟା କେତେ କଷ୍ଟକର । ବାପା ଭାବୁଛନ୍ତି ତାଙ୍କ ଝିଅ ଅଭିଆଡ଼ି ବେଳେ ଯେମିତି କିଛି ନକରି ଖାଲି ପାଠ ପଢୁଥିଲା ଏବେ ବି ସେମିତି ସମୟ ପାଉଛି ପଢ଼ିବା ପାଇଁ ।

ଆଜି ନ'ଟାରେ ପରୀକ୍ଷା ଅଛି, ଅଥଚ ମିହିର ଗତ କାଲିଠାରୁ ଭୁବନେଶ୍ୱର ଗଲେଣି । ସେଠାରେ ହେଉଥିବା ଭେଷଜ ଚିକିତ୍ସକ ସମ୍ମିଳନୀରେ ଯୋଗ ଦେବାପାଇଁ । ପରୀକ୍ଷା ପାଇଁ ଡର ଲାଗୁଥିବାରୁ ସିଏ ମିହିରଙ୍କୁ କହିଥିଲା ନ ଯିବା ପାଇଁ । ମିହିର କିନ୍ତୁ ତାର ସବୁ ବାହାନାକୁ ହସରେ ଉଡ଼େଇ ଦେଇ କହିଥିଲେ, ସେ ଦିନ ତ ରବିବାର । ମିଟୁର ସ୍କୁଲ ଛୁଟି ଓ ଦିପୁର କଲେଜ ମଧ୍ୟ । ଦିପୁ ସେଦିନ ତୁମକୁ ସ୍କୁଟରରେ ପରୀକ୍ଷା ହଲରେ ଛାଡିଦେବ । ମିଟୁର ସ୍କୁଲ ନଥିବାରୁ ତା କାମରୁ ବି ତୁମକୁ ଛୁଟି । ଆଉ ଘରେ ବୋଉ ଓ ଚୁନିଆ ତ ଅଛନ୍ତି । ଏତିକି କହି, ପରୀକ୍ଷା ପାଇଁ ଶୁଭକାମନା ଜଣାଇ ଚାଲିଯାଇଥିଲେ ମିହିର ।

ଡାକ୍ତରଟେ ସିନା ହେଇଛି, କିନ୍ତୁ ମିତା ପରୀକ୍ଷାକୁ କେତେ ଡ଼ରେ ସେ କଥା ସିଏ ଜାଣେ ଓ ଜାଣନ୍ତି ତା ବାପା, ବୋଉ, ଭାଇ ଭଉଣୀମାନେ । ମାଟ୍ରିକ ପରୀକ୍ଷା କଥା ମନେ

ପଢ଼ୁଛି । କାଲି ଭଳିଆ ଲାଗୁଛି-ତାର ସେଣ୍ଟର ପଡିଥାଏ କଲେଜିଏଟ୍ ସ୍କୁଲରେ । ପରୀକ୍ଷାର ପ୍ରଥମ ଦିନ ବୋଉ ସକାଳୁ ଉଠି ମନ୍ଦିରରେ ପୂଜା କରି ବେଲପତ୍ର ଓ ପାଦୁକ ଆଣିଥିଲେ । ପରୀକ୍ଷା ପାଇଁ ମିତା ଏତେ ଚିନ୍ତିତ ହୋଇଯାଏ ଯେ ତା' ପେଟକୁ ସେତେବେଳେ କିଛି ଯାଏନି । ଖାଲି, ବାନ୍ତି ଲାଗେ । ବୋଉ ଦହି ସରବତର ଗ୍ଲାସ ଧରିଥିବେ । ବଡ଼ ଭାଇନା ତା ପେନ୍‌ସିଲ ବାକ୍ସ ଦେଖୁଥିବେ । ଭଲ ଚାଲୁଥିବା ଦୁଇ ତିନିଟା  ପେନ୍ ଏବଂ ଆଡମିଟ କାର୍ଡ଼ ଆଦି ଠିକ୍‌ରେ ଅଛି କି ନାହିଁ । ନାନୀ ମୁଣ୍ଡ କୁଣ୍ଡେଇ ବେଣୀ ପକେଇ ଦେଉଥିବେ ଆଉ ସିଆଡ଼େ ବାପା ଦୁଇଘଣ୍ଟା ଆଗରୁ ରିକ୍‌ସା ଗୋଟେ ଡ଼ାକି ସେଇଥିରେ ମିତା ସାଙ୍ଗେ ନିଜେ ଯିବା ପାଇଁ ବସି ପଡିଥିବେ । ମିତା ପାଦୁକ, ବେଲପତ୍ର ପାଇ,  ଢ଼ୋକେ ସରବତ ପିଇ, ଭାଇନାଙ୍କ ହାତରୁ ପେନ୍‌ସିଲ ବାକ୍ସଟା ନେଇ ଠାକୁର ଘରେ ପଶେ ।  ଠାକୁରଙ୍କୁ ମୁଣ୍ଡିଆ ମାରି ଚନ୍ଦନ ଟିକିଏ ମୁଣ୍ଡରେ ଲଗାଇ ହାତରେ ଘଣ୍ଟା ବାନ୍ଧୁ ବାନ୍ଧୁ ପଛକୁ ନ ଅନାଇ ଏକ ମୁହାଁ ହୋଇ ଯାଇ ରିକ୍ସାରେ ବସେ । ଅବଶ୍ୟ ଘରୁ ବାହାରିଲାବେଳେ ଦାଣ୍ଡଘରେ ବସା ହୋଇଥିବା ପୂର୍ଣ୍ଣ କୁମ୍ଭକୁ ଥରେ ଚାହିଁଦେଇଥାଏ । ବାଟସାରା  ଆଉ କୁଆଡ଼େ ଅନାଏନି ମିତା, କାଳେ କୋଉଠି ଗୋଟେ ବଣି ଦେଖାଦେବ । ବାଟସାରା ବାପା ବୁଝାଉଥିବେ-ସମୟ ଦେଇ ପ୍ରଶ୍ନ ପଢ଼ିବୁ । ରୋଲ ନମ୍ବର ଠିକ୍‌ରେ ଲେଖିବୁ । ସବୁ ପ୍ରଶ୍ନର ଉତ୍ତର ଲେଖିବୁ । କିଛି ଛାଡ଼ିବୁନି । ପରୀକ୍ଷା ହଲକୁ ଯିବା ଆଗରୁ ମୁଣ୍ଡ ଉପରେ ହାତ ରଖି ମିତାକୁ କହନ୍ତି-ଖୁବ୍ ପରିଶ୍ରମ କରିଛୁ, ଭଗବାନ ସାହା ହେବେ, ଭଲ କରିବୁ, କାନ୍ଦ କାନ୍ଦ ହୋଇ ସିଏ ପରୀକ୍ଷା ହଲକୁ ପଶେ । ଗୋଟେ ପରୀକ୍ଷା ସରିଗଲା ପରେ ହଲରୁ ବାହାରୁ ବାହାରୁ ବାପା ମିତା ପାଖକୁ ଚାଲି ଆସନ୍ତି ଓ ତାର ହସ ହସ ମୁହଁ ଦେଖି ଆସ୍ୱସ୍ତ ହୁଅନ୍ତି ଓ ଟିଫିନ୍‌ରେ ବୋଉ ଦେଇଥିବା ରସଗୋଲାଟି ମିତା ପାଟିକୁ ବଢ଼ାଇ ଦେଇ କହନ୍ତି 'ସକାଳୁ କିଛି ଖାଇନୁ । ଦ୍ୱିତୀୟ ପରୀକ୍ଷା କେମିତି ଦେବୁ-ଖାଇଦେ ।'

ପରୀକ୍ଷା ଦେଇ ସାରି ଘରକୁ ଫେରିଲା ବେଳେ ବାପା ପ୍ରଶ୍ନପତ୍ରକୁ ନିଜ ପାଖରେ ରଖି ଦିଅନ୍ତି । ନାନୀ ଭାଇନା କେହି ଆଉ ସେ ପ୍ରଶ୍ନ ଦେଖି ପାରନ୍ତି ନି । ବାପା ସବୁବେଳେ କହନ୍ତି, ପଛ କଥା ପାଇଁ ଚିନ୍ତା କରନା, କାଲିର ପରୀକ୍ଷା ପାଇଁ ପଢ଼ । ପରୀକ୍ଷା ଚାଲୁଥିବା ସମୟରେ ଘରେ କେହି ବଡ଼ ପାଟିରେ କଥା ହୋଇ ପାରିବେନି । ବାପା ବିରକ୍ତ ହୁଅନ୍ତି ଜୋର୍‌ରେ ହସିଲେ  ଅବା ରେଡ଼ିଓ ବାଜିଲେ । ଆଉ ରାତି ଦଶଟା ହେଉ ହେଉ କହିବେ-'ଶୋଇପଡ଼ ମା', ପରୀକ୍ଷା ପୂର୍ବଦିନ ବେଶି ରାତିଯାଏ ପଢ଼ିବା କଥା ନୁହେଁ ।' ପୁଣି ତା ପରଦିନ ଆରମ୍ଭ ହୋଇଯାଏ

ସେଇ ପର୍ବ । ବାଡ଼ିପଟ ଆମ୍ବଗଛରେ ହଳଦୀ ବସନ୍ତ ବା ଭଦଭଦଳିଆ ବସିବାର ଦେଖିଲେ ସମସ୍ତେ ଡାକ ପକାନ୍ତି ମିତାକୁ-ଶୁଭ ପକ୍ଷୀ ଦେଖିଲେ କୁଆଡେ ପରୀକ୍ଷାରେ ଭଲ ହେବ ।

ଏସବୁର ପୁନରାବୃତ୍ତି ଘଟିଛି ପିୟୁ ଓ ପିପି ପରୀକ୍ଷା ବେଳକୁ । ମିତା ଯେତେବେଳେ ମେଡ଼ିକାଲ ସିଟ୍ ପାଇ ବ୍ରହ୍ମପୁର ଗଲା ପଢ଼ିବାକୁ, ସେତେବେଳେ ଘର ସାରା ସମସ୍ତଙ୍କର ଭାବେଣି ପଡ଼ିଲା ତାର ଅବସ୍ଥା ପରୀକ୍ଷା ବେଳକୁ କ'ଣ ହେବ ? କିନ୍ତୁ ଯାହା ହେଉ, ତାର ପ୍ରଥମ ଏମ.ବି.ଏସ. ପରୀକ୍ଷା ହେଲାବେଳକୁ ନାନୀ ବାହା ହୋଇ ରହୁଥାନ୍ତି ବ୍ରହ୍ମପୁରରେ । ଠିକ୍ ପୂର୍ବଦିନ ସଂନ୍ଧ୍ୟାରେ ମିତା ରିକ୍ସାରେ ଯାଇ ନାନୀଙ୍କ ଘରେ ହାଜର, କ'ଣ ନା ତାକୁ ଆନାଟୋମି କିଛି ଆସୁନି ତେଣୁ ପରୀକ୍ଷା ଦେବନି । ନାନୀ ଯେତେ ବୁଝାଇଲେ ବି ସିଏ ବୁଝିବାକୁ ନାରାଜ । ଶେଷକୁ ବାଧ ହୋଇ ଭିଣୋଇ ନାନୀକୁ ପଠାଇଲେ ମିତା ସାଙ୍ଗରେ ହଷ୍ଟେଲକୁ । ଆଉ ନାନୀ ବହୁତ ବୁଝେଇ ସୁଝେଇ ସାହସ ଦେଇ ପଠାଇଥିଲେ ପରୀକ୍ଷାକୁ । ତା ପରେ ଏହା ଏକ ଅଲେଖା ନିୟମ ହୋଇଯାଇଥିଲା । ପ୍ରତ୍ୟେକ ପରୀକ୍ଷା ପୂର୍ବଦିନ ନାନୀ ଆସି ମିତା ପାଖରେ ରହୁଥିଲେ । ସାଙ୍ଗରେ ଆଣୁଥିଲେ ଛୋଟ ମାଟି ଆଟିକାରେ ମିଠା ଦହି । ପରୀକ୍ଷାକୁ ଯିବା ଆଗରୁ ଖାଇକି ଯିବା ପାଇଁ । ଏମିତି ହୋଇ ପ୍ରଥମ ଦ୍ୱିତୀୟ ଓ ତୃତୀୟ ଏମ୍.ବି.ବି.ଏସ୍ ପରୀକ୍ଷା ସରି ଯାଇଥିଲା । ଫାଇନାଲ ପରୀକ୍ଷା ଦେବାକୁ ମାସେ ଅଛି, ଭିଣେଇଙ୍କ ର ବଦଳି ହୋଇଗଲା ପୁରୀ । ସେତେବେଳେ ସମସ୍ତେ ଭାବିଲେ ମିତା ଏଥର ସାହାସୀ ହୋଇଗଲାଣି । ଆଉ ମାସକରେ ଡାକ୍ତର ହୋଇଯିବ । ଆଉ କ'ଣ ସିଏ ପରୀକ୍ଷାକୁ ଡରିବ ? ମିତା ବି ଭାବୁଥିଲା ଏଥର ଏକା ପରୀକ୍ଷାକୁ ସାମନା କରି ପାରିବ । ପରୀକ୍ଷା ଆଉ ମାତ୍ର ଦୁଇଦିନ ଥିଲା । ମିତା ନିଜକୁ ସମ୍ଭାଳି ପାରିଲାନି । ହଷ୍ଟେଲରେ କାହାକୁ କିଛି ନ କହି ବସ୍‌ରେ ବସି ସିଧା କଟକ ପଳାଇ ଆସିଲା । ଘରେ ସମସ୍ତେ ତାକୁ ଦେଖି ଛାନିଆ ହୋଇଗଲେ । ମିତା ଖାଲି କହୁଥାଏ ସିଏ ପରୀକ୍ଷା ଦେବନି । ତାକୁ କିଛି ଆସୁନି । ସେ ଦିନ ଘର ସାରା ସମସ୍ତେ କେତେ ବୁଝାଇଲେ ଓ ତା ପର ଦିନ ପାହାନ୍ତି ବସରେ ମିତା ସାଙ୍ଗରେ ବୋଉ ଆସିଥିଲେ ହଷ୍ଟେଲକୁ । ଘରଦ୍ୱାରା ସବୁ ଛାଡ଼ି । ମିତାର ପୁରା ପରୀକ୍ଷା ସରିବା ଯାଏ ତା ପାଖରେ ଥିଲେ ମଧ୍ୟ ।

ଆଜି ମିତାର ପରୀକ୍ଷା । କିନ୍ତୁ ତା ପାଖରେ କେହି ନାହିଁ, ତାକୁ ସାହସ ଦେବାପାଇଁ । ବୋଝ ଉପରେ ନଳିତା ବିଡ଼ା ପରି ମିଟ୍ଟୁକୁ ସକାଳୁ ଜର ହେଲାଣି । ପୁଣି ଦିଅଁର ଦିପୁ, ଯିଏ କି ନିଷ୍ଟରେ ଶେଷ ବର୍ଷର ଇଞ୍ଜିନିୟରିଂ ଛାତ୍ର, ସିଏ ତାଙ୍କ ସାଙ୍ଗର ଜନ୍ମଦିନ ପାଇଁ ସାଢ଼େ

ସାତଟାରୁ ଗୋପାଳପୁର ଗଲେଣି । ଫେରୁ ଫେରୁ ସନ୍ଧ୍ୟା ହେବ ବୋଲି କହିଯାଇଛନ୍ତି । ଆଉ ଶାଶୂଙ୍କର ଆଜି ଏକାଦଶୀ ହୋଇଥିବାରୁ ସିଏ ଗାଧୋଇ ପାଧୋଇ ଠାକୁର ଘରକୁ ଚାଲିଗଲେଣି । ଏମିତିରେ ତାଙ୍କର ପୂଜା ପାଇଁ ବେଶ୍ ସମୟ ଲାଗେ । ଆଜି ପୁଣି ବିଷ୍ଣୁ ସହସ୍ରନାମ ଜପ କରିବେ । ତେଣୁ ଦିନ ଏଗାରଟା ଆଗରୁ ଠାକୁର ଘରୁ ବାହାରିବାର ପ୍ରଶ୍ନ ନାହିଁ । ଆଉ ରହିଲା ଖାଲି ଚୁନିଆ, ଯାହାକୁ ବାପା ଗାଁରୁ ଆଣି ଏଠିକୁ ପଠେଇ ଥିଲେ ମିତାକୁ ଘର କାମରେ ସାହାଯ୍ୟ କରିବ ବୋଲି । ତାରି ଉପରେ ଜରୁଆ ପିଲାଟା ଦାୟିତ୍ୱ ଦେଇ ମିତା କେମିତି ଯିବ ପରୀକ୍ଷା ଦେଇ ? ମିତାର ମୁଣ୍ଡ ଟାଇଁ ଟାଇଁ ବିନ୍ଧିବାକୁ ଆରମ୍ଭ ହେଲା ।

ଆଗରୁ ଯଦି ମିତା ଜାଣିଥାନ୍ତା ଏମିତି ସବୁ ଅସୁବିଧା ହେବ ବୋଲି, ତା ହେଲେ କାଲିଠାରୁ ଏବେ ଛତ୍ରପୁରରେ ରହୁଥିବା ନାନୀଙ୍କୁ କହିଥାନ୍ତା ଆସିବା ପାଇଁ । ସବୁ କାମ ପଛକୁ ପକାଇ ନାନୀ ନିଶ୍ଚେ ଆସିଥାନ୍ତେ ତାକୁ ସାହାଯ୍ୟ କରିବା ପାଇଁ ଓ ସାହସ ଦେବା ପାଇଁ । ଏବେ ଆଠଟା ବାଜିଲାଣି । ନାନୀଙ୍କୁ ଫୋନ କଲେବି ସିଏ ଏତେ ଶିଘ୍ର ଆସିପାରିବେନି । ମିଟୁ ପାଇଁ ଫ୍ଲାସ୍କରେ ଗରମ ପାଣି ରଖିଛି । ପାଖରେ ଚିନି ଓ ହର୍ଲିକ୍ସ । କମଳା ରସ ବି କାଢ଼ି ଦେଇଛି ମିତା । ଚୁନିଆକୁ ସବୁ ବୁଝାଇ ଦେଇଛି କେତେବେଳେ କେଉଁଟା ପିଇବାକୁ ଦେବ ମିଟୁକୁ । ସାଢ଼େ ସାତଟାରୁ କ୍ରୋସିନ ସିରପ ଦେଇଥିଲା । ହେଲେ ବି ଏବେଯାଏ ଜର ଛାଡ଼ିନି । ଚୁନିଆ ରିକ୍ସା ଡ଼ାକି ଆଣିସାରିଲାଣି । ମିଟୁ କପାଳରେ ହାତ ମାରିଲା ମିତା । ଜର ଟିକେ ବି କମିନି । ଆଉ ସମ୍ଭାଳି ପାରିଲାନି ମିତା । ଭାବିଲା ଦରକାର ନାହିଁ ତାର ପିଢ଼ି କରିବା । ଚୁନିଆକୁ ଡାକି କହିଲା ରିକ୍ସା ଫେରାଇ ଦେବାକୁ । ସିଏ ପରୀକ୍ଷା ଦେବାକୁ ଯିବନି ।

'ନାଇଁ ନାଇଁ ରିକ୍ସା ଫେରାହେବନି-ତୁ ଯିବୁ ପରୀକ୍ଷା ଦେବା ପାଇଁ ', କହି କହି ନାନୀ ଘର ଭିତରକୁ ପଶି ଆସିଲେ । ହାତରେ ମିଠା ଦହିର ଛୋଟ ଆଟିକା । ମିତା ଭାବିଲା ସିଏ ସ୍ୱପ୍ନ ଦେଖୁନି ତ ଆଉ ? ନାନୀ କହିବାକୁ ଲାଗିଲେ, କାଲି ରାତିରେ ବାପା ଫୋନ୍ କରିଥିଲେ-'ମିତାର ପରୀକ୍ଷା ରବିବାର ଦିନ ଅଛି, ତେଣୁ ଯେମିତି ହେଲେ ତା' ପାଖରେ ଯାଇ ପହଞ୍ଚିବୁ । ନ ହେଲେ ଡ଼ରି କି ସିଏ ପରୀକ୍ଷା ଦେବନି ।' ନାନୀ ଆହୁରି ଆଗରୁ ଆସି ପହଞ୍ଚିଥାଆନ୍ତେ, କିନ୍ତୁ ବାଟରେ ବସର ଚକା ପଙ୍କଚର ହେଲାରୁ ଘଣ୍ଟାଏ ଡ଼େରି ହୋଇଗଲା । ଜମାଟ ବାନ୍ଧିଥିବା ଅଭିମାନର ଲୁହ ଟୋପାସବୁ ମିତା ଆଖିରୁ ବହିବାକୁ ଲାଗିଲା । ମିଠା ଦହିରୁ ଚାମୁଚେ ମିତା ପାଟିକୁ ବଢ଼ାଇ ଦେଇ ନାନୀ କହିଲେ-କାନ୍ଦନା, ଦହି ଖାଇଦେ । ପରୀକ୍ଷାରେ ଭଲ କରିବୁ ।'



# ତା ନାଁ ଟିଟୁ

ପାପା ଜେଜେମା' ଙ୍କୁ ଆଣିବା ପାଇଁ ଷ୍ଟେସନ ଗଲେଣି । ଆଉ ଟିକିଏ ସମୟପରେ ସିଏ ଆସି ପହଞ୍ଚିବେ । ଆଜି ସେଥିପାଇଁ ବଡି ସକାଳୁ ନିତୁ ନାନୀ ଓ ମୁଁ ଗାଧେଇ ତିଆରି ହେଇଯାଉନ୍ତୁ । ଗାଧେଇବାକୁ ଜମାରୁ ଇଚ୍ଛା କରୁ ନଥିବା ଟିଟୁ କୁ ବି ମା' ସକାଳୁ ଗାଧେଇ ଦେଇଛନ୍ତି । ଗାଧେଇବା ନାଁ ଧରିଲେ ଟିଟୁ ଇଆଡେ ସିଆଡେ ଯାଇ ଲୁଚେ । ମୁଁ ଓ ନିତୁ ନାନୀ ଦୁହେଁ ତାକୁ ଖୋଜି ଟାଣି ଟାଣି ଆଣି ମା'ଙ୍କ ପାଖରେ ହାଜିର କରାଉ ଓ ମା ତାକୁ ଗାଧେଇ ଦିଅନ୍ତି । ମତେ ବି ଭଲ ଲାଗେନି ଗାଧେଇବା ପାଇଁ । ସେଥିପାଇଁ ଦୁଇଦିନ ଆଗେ ଶେଯରୁ ଉଠୁ ଉଠୁ ରୋଷେଇ ଘରେ କାମ କରୁଥିବା ମା' ଙ୍କ ପାଖକୁ ଯାଇ କହିଥିଲି ମତେ ଜରୁଆ ଜରୁଆ ଲାଗୁଛି । ମା' ମୋ କଥା ଶୁଣି ବ୍ୟସ୍ତ ହେଇ ସବୁ କାମ ଛାଡ଼ିଦେଇ ଆସି ମୋ କପାଳରେ ଓ ବେକରେ ହାତ ମାରି ଦେଖିଥିଲେ । ତା ପରେ ମତେ ଗାଧେଇବା ପାଇଁ ଓ ସ୍କୁଲ ଯିବାପାଇଁ ମନା କରି ଦେଇଥିଲେ । ନାନୀ ମା'ଙ୍କ କଥା ଶୁଣି ଯାଇ ପାପାଙ୍କୁ କହି ଦେଇଥିଲା । ପାପା ଆସି ଡାକିଥିଲେ-

'କିଟୁ, ଏଠିକି ଆସେ ।'

ମୁଁ ତାଙ୍କ ପାଖକୁ ଗଲାରୁ ଥର୍ମୋମିଟର ରେ ମୋର ଜର ଦେଖି କହିଲେ-'ଜର ଫର କିଛି ନାହିଁ । ଚୁପ୍ ଚାପ୍ ଗାଧା ଆଉ ସ୍କୁଲ ଯା ।'

ପାପାଙ୍କ କଥା ଶୁଣି ମୁଁ ମା' ଙ୍କୁ ଅନାଇଲି । ମା' ପାପାଙ୍କୁ କହିଲେ-'ତା ଦେହଟା ଉଷୁମ୍ ଲାଗୁଛି, ସିଏ ସ୍କୁଲ ନଯାଉ ।' ମତେ ଅନେଇ କହିଲେ-କିଟୁ ତୁ ଖଟରେ ଶୋଇ ରହି ବିଶ୍ରାମ ନେ ।'

ମା'ଙ୍କ କଥା ଶୁଣି ମୁଁ ଅଘଷା ଦାନ୍ତରେ ଯାଇ ବିଛଣାରେ ଚାଦର ଘୋଡେଇ ହୋଇ ଶୋଇ ରହିଲି । ପାପା ମା' ଯିବା ଯାଏ । ମା' ମଝିରେ ଫୋନ୍ କରି ମୋ ଦେହ କେମିତି ଲାଗୁଛି ପଚାରିଥିଲେ ।

ଆଜି କିନ୍ତୁ ଜରୁଆ ଲାଗୁଛି କହିଥିଲେ ବି ମତେ ଗାଧେଇବାକୁ ପଡି ଥାଆନ୍ତା । ପାପା ଆଜି କିଛି ଶୁଣି ନଥାନ୍ତେ । ମତେ ଗାଧେଇ ଦେଲାବେଳେ ମା' କହୁଥିଲେ ଜେଜେ ମା ଆସିବା ଆଗରୁ ସମସ୍ତେ ଗାଧେଇ ସଫା ସୁତୁରା ହେଇ ନଥିଲେ ସିଏ ବିରକ୍ତ ହେବେ ।

ଆହୁରି କହୁଥିଲେ ଜେଜେମା କୁଆଡେ ଗାଧେଇ ସାରିଲା ପରେ କାହାକୁ ଛୁଅନ୍ତିନି । ଆଉ ଯଦିବା ଅଗାଧୁଆ କିଏ ତାଙ୍କୁ ଛୁଇଁଦେଲା ତା ହାଲେ ସିଏ ଛୁଆଁ ହେଇଯାଆନ୍ତି ଓ ଆଉ ଥରେ ଗାଧାନ୍ତି । ଆଜି ତ ଜେଜେମା ଟ୍ରେନ୍‌ରେ ଆସୁଛନ୍ତି-ତା ମାନେ ସିଏ ଗାଧେଇ ନଥିବେ । ଏବେ ଯଦି ନିତୁ ନାନୀ, ମୁଁ କି ଟିଟୁ ତାଙ୍କୁ ଛୁଇଁଦେବୁ ତାହାଲେ ଆମେ ସବୁ କ'ଣ ଛୁଆଁ ହେଇଯିବୁ ଓ ଆଉଥରେ ଗାଧେଇବୁ ? ମା'ଙ୍କୁ ପଚାରିଥିଲି ମୁଁ । ମା ହସି ହସି କହିଲେ 'ନା ତୁମେମାନେ ଛୁଆଁ ହେବନି ।'

ମା' ସବୁ ଓଲଟା ପାଲଟା କଥା କହନ୍ତି । ତଥାପି ଭଲହେଲା, ଆମେ ସବୁ ଛୁଆଁ ହେବୁନି । ନ ହେଲେ ଜେଜେମା ଆସିଲାବେଳେ ମୁଁ ତାଙ୍କ ପାଦ ଛୁଇଁ ପ୍ରଣାମ ନ କରି ଦୂରରୁ ମୁଣ୍ଡିଆ ମାରିଦେଇଥାନ୍ତି ।

ନ ହେଲେ ପୁଣି ଥରେ କିଏ ଗାଧେଇବ ?

ଆଜି ଜନ୍ମାଷ୍ଟମୀ । ଆଜି ସ୍କୁଲ ଛୁଟି । ମା'ଙ୍କର ବି ଛୁଟି । ସିଏ ଆଜି ଘରେ ରହିବେ । ମା ଘରେ ରହିବା ଦିନ ମତେ ବହୁତ ଭଲଲାଗେ । ପାପାଙ୍କ ଡାକ୍ତରଖାନାରେ କିନ୍ତୁ ଛୁଟି ନାହିଁ । ପାପା ଜେଜେମାଙ୍କୁ ଘରେ ଛାଡ଼ିଦେଇ ତାଙ୍କ ଡାକ୍ତରଖାନା ଚାଲିଯିବେ ।

ଆଜି କୁଆଡେ ଭଗବାନ କୃଷ୍ଣଙ୍କର ଜନ୍ମଦିନ । ମୁଁ ଆଜି ମା'ଙ୍କୁ ପଚାରିଲି, ଶ୍ରୀକୃଷ୍ଣଙ୍କୁ କେତେ ବର୍ଷ ହେଲା ? ଯେମିତି ନିତୁ ନାନୀ କୁ ନ' ବର୍ଷ, ମତେ ଛ' ବର୍ଷ ଓ ଟିଟୁକୁ ତିନିବର୍ଷ । ମା' କହିଲେ ଭଗବାନଙ୍କର ବୟସ ନଥାଏ । ମା' କିଛି ଜାଣି ନାହାନ୍ତି । ଜେଜେମା ଆସିଲେ କହିପାରିବେ । ପାପା କୁହନ୍ତି ତାଙ୍କ ମା' ପୁରାଣ ପୋଥି ପଢ଼ି ଠାକୁର ମାନଙ୍କ ବିଷୟରେ ସବୁ ଜାଣିଛନ୍ତି ।

ଜେଜେ ମା' ଏବେ ଯାଏ କାହିଁକି ଆସି ନାହାନ୍ତି ? ଜେଜେମା କୁ ଅପେକ୍ଷା କରି ନାନୀ ଓ ମୁଁ ପାପା ଯିବାବେଳଠାରୁ ବାହାର ବାରଣ୍ଡାରେ ବସିଛୁ । ମା ସମସ୍ତଙ୍କ ପାଇଁ ଜଳଖିଆ ତିଆରି କରୁଛନ୍ତି । ଟିଟୁ ଘର ଭିତରୁ ବାହାରି ବାରଣ୍ଡା କୁ ଆସିଲା । ମୁଁ ଦେଖିଲି ଟିଟୁ ଆଜି ନ ଛୋଟେଇ ଠିକ୍ ଭାବରେ ଚାଲୁଛି । ଯାହାହେଉ, ତାର ଗୋଡ ଭଲ ହେଇଯାଇଛି । ନ ହେଲେ ଜେଜେମା କେତେ ମନଦୁଃଖ କରିଥାନ୍ତେ । ମୁଁ ଟିଟୁକୁ କୋଳରେ ବସାଇଲି । କାଲି ପଗଣାରେ ବୁଲିଲାବେଳେ ତା ଗୋଡରେ କାଚ୍‌ପଶି କେତେ ରକ୍ତ ବାହାରିଥିଲା । ରୋଷେଇ ଘରକୁ ପାଣି ପିଇବାକୁ ଆସିଲା ବେଳେ ମୁଁ ଝରକା ପଟେ ତା ଗୋଡରୁ ରକ୍ତ ବାହାରୁଥିବା ଦେଖି ପାଟି କରି ମା' କୁ ଡାକିଥିଲି । ମା' ସାଂଗେ ସାଂଗେ ଟିଟୁକୁ କୋଳରେ ଧରି ତାର ରକ୍ତ

ବାହାରୁଥିବା ଜାଗାକୁ ହାତରେ ଚାପି ଧରିଥିଲେ ଓ ଆମ ଘରେ କାମ କରୁଥିବା ଫୁଲ ମାଉସୀକୁ ଗାଳି ଦେଉଥିଲେ ଭଂଗା କାଚ୍ ଗ୍ଲାସ ବାହାରେ ନ ଫିଙ୍ଗି ଅଗଣାରେ କାହିଁକି ଫିଙ୍ଗିଥିଲା ବୋଲି । ଚାପି ଧରିବାରୁ ‘ଟିକେ ସମୟ ପରେ ଟିଟୁ ଗୋଡରୁ ରକ୍ତ ବୋହିବା ବନ୍ଦ ହୋଇଯାଇଥିଲା । ପାପା ତା’ ଗୋଡକୁ ଡେଟଲ ମିଶା ତୁଳାରେ ସଫା କରି ମଲମ ଲଗାଇ ଦେଇଥିଲେ । ମଲମ ଲଗାଇଲା ପରେ ବି ଟିଟୁ ଠିକ୍‌ରେ ଚାଲି ପାରୁ ନଥିଲା । ସେ ଗୋଡଟା ତଳେ ଲଗାଇଲେ ତାକୁ କାଟୁଥିଲା ନିଶ୍ଚେ । ପାପା ଡାକ୍ତର । ସେଥିପାଇଁ ତାର ଦରଜ କମାଇବା ପାଇଁ ଗୋଟେ ବଟିକା କୁ ଖଣ୍ଡ ଖଣ୍ଡ କରି ଚିନି ପାଣିରେ ଗୋଳାଇ ଚାମଚରେ ଆଣିଥିଲେ । ମା’ ଟିଟୁ କୁ କୋଳରେ ଧରି ଆଁ କରାଇଥିଲେ ଓ ପାପା ସେ ଔଷଧକୁ ସିଧା ତା ତଣ୍ଟି ପାଖରେ ପକାଇ ଦେଇଥିଲେ । ଯାହାହେଉ ସିଏ ଔଷଧ ବାନ୍ତି ନ କରି ଢୋକି ଦେଇଥିଲା ।

ମତେ ଔଷଧ ଖାଇବା ପାଇଁ ଜମାରୁ ଭଲ ଲାଗେନି । ମୁଁ ଖେଳିଲାବେଳେ ପଡ଼ିଯାଇ ଆଣ୍ଠୁ ଖଣ୍ଡିଆ କଲେ ମା’ ମଲମ ଲଗାଇଦେବା ପାଇଁ ଓ ଔଷଦ ଖୁଆଇବା ପାଇଁ ମତେ ଗୋଡାନ୍ତି ଓ ମୁଁ ଛୋଟେଇ ଛୋଟେଇ ଦୌଡ଼େ । ମା’ ମତେ ଧରି ପାରନ୍ତିନି । ପାପା ଓ ନାନୀ ତାଙ୍କ ସାଂଗରେ ମିଶିଲେ ମତେ ଧରି ପାରନ୍ତି । ଧରିଲେ କ’ଣ ହେଲା ମୁଁ ଦାନ୍ତ ଚିପି ଦେଇ ପାଟି ଖୋଲେନି । ମୋ ପାଟି ଆଁ କରେଇବା ପାଇଁ ନାନୀ ମତେ କୁତୁକୁତୁ କରେ ଆଉ ମୁଁ ଦୁଇ ହାତ ପାଟି ଉପରେ ରଖି ହସେ ଓ କହେ ମୋ ପାଇଁ ଖେଳଣା କିଣାଇ ଦେଲେ ମୁଁ ଔଷଧ ଖାଇବି । ପାପା ରାଗନ୍ତି । ମା’ କିନ୍ତୁ ମୋ କଥା ମାନିଯାନ୍ତି । ମୁଁ ଔଷଧ ଖାଇ ସାରିଲା ପରେ ମା’ ବଜାର ଯାଇ ମୁଁ କହିଥିବା ଖେଳଣା ଆଣି ଦିଅନ୍ତି । ଦିନେ ନାନୀ ପଛରେ ତା ସାଇକେଲରେ ବସିଲାବେଳେ ମୋ ଗୋଡ ଚକ ଭିତରେ ପଶି ଯାଇଥିଲା ଓ ମୋ ଗୋଡ ଫୁଲି ଯାଇ ବହୁତ କାଟିଥିଲା । ସେ ଦିନ ଔଷଧ ଖାଇଲା ପରେ ମା’ ମୋ ପାଇଁ ଲିଓ ର ବନ୍ଧୁକ କିଣେଇ ଦେଇଥିଲେ । ଆଉ ଦିନେ ସ୍କୁଲରେ ଦୌଡୁ ଦୌଡୁ ଅନ୍ୟ ଗୋଟେ ପିଲାର ମୁଣ୍ଡ ବାଜି ମୋର ଓଠ ଫାଟି ଯାଇ ରକ୍ତ ବାହାରିଥିଲା । ସେ ଦିନ ପାପା, ମା’ ମତେ ଡାକ୍ତରଖାନା ନେଇଥିଲେ ଓ ସେଠି ମୋର ଓଠ ସିଲେଇ କରାହେଇଥିଲା । ସେ ଦିନ ମୋ କଥା ଅନୁସାରେ ପାପାଙ୍କୁ କହି ମା ମୋ ପାଇଁ ଭିଡ଼ିଓ ଗେମ୍ କିଣାଇ ଦେଇଥିଲେ ।

ଟିଟୁ କଥା କହିପାରୁନି ବୋଲି ସିନା ! ନ ହେଲେ ଆଜି ତା ପାଇଁ ବଲ୍ କିଣା ହେଇଥାନ୍ତା । ଟିଟୁ କାହିଁକି ଆମ ଭଳି କଥା କହିପାରୁନି ମୁଁ ମାଙ୍କୁ ଥରେ ପଚାରିଥିଲି । ମା’

ଟିଟୁର ମୁଣ୍ଡ ଆଉଁଷି ଦେଇ କହିଥିଲେ ସିଏ କଥା ସିନା କହି ପାରୁନି କିନ୍ତୁ ସବୁ ଜାଣିପାରେ । ମା'ଙ୍କ ମୁହଁଟା ମତେ ବହୁତ ଦୁଃଖ ଦୁଃଖ ଲାଗୁଥିଲା ସେତେବେଳେ ।

କଥା ନ କହିଲେ ବି ସତରେ ସିଏ ସବୁ ଜାଣିପାରେ । ନ ହେଲେ ସିଏ ମୋ ସାଂଗରେ ଖେଳେ କେମିତି ? ଶନିବାର ଦିନ ପାପା, ମା, ନାନୀ ସମସ୍ତେ ଚାଲିଗଲା ପରେ ସିଏ ମୋ ସାଂଗେ କେତେ ଖେଳେ । ମା' ଗଲାବେଳେ ଫୁଲ ମାଉସୀ କୁ କହି ଯାଆନ୍ତି-'କିଟୁ ଓ ଟିଟୁ ଘରେ ରହିଲେ-ଦେଖୁଥିବ ।' ମା ଯିବା ପଛେ ପଛେ ଫୁଲ ମାଉସୀ ଆମକୁ ଘର ଭିତରେ ଖେଳିବାକୁ କହି ଗ୍ରିଲ୍‌ରେ ତାଲା ପକାଇ ପଛପଟେ ଥିବା ତା ଘରକୁ ଚାଲିଯାଏ । ସିଏ ଚାଲିଯିବା ପରେ ଆମେ ବଲ୍ ଚଟାଣରେ ଗଡାଇ ଗଡାଇ ଖେଳୁ । ତା ପରେ ମୁଁ ଦୂରକୁ ବଲ୍ ଫିଙ୍ଗେ ଓ ଟିଟୁ ଆଣି ମତେଦିଏ । କେବେ କେବେ ଶେଯ ଉପରେ ବସି ମୁଁ ତକିଆ ତଳେ, ଚାଦର ତଳେ, ବଲକୁ ଲୁଚାଏ ଓ ଟିଟୁ ଖୋଜି ବାହାର କରେ । ବଲ ଖେଳି ଖେଳି ହାଲିଆ ହୋଇଗଲେ ମା' ରଖିଥିବା ବିସ୍କୁଟ ଆମେ ଖାଉ । ତା ପରେ ଆମେ ଲୁଚକାଳି ଖେଳ ଖେଳୁ । ମୁଁ ଦୌଡ଼ିଯାଇ କବାଟ କଣ, ଆଲେଣା ସନ୍ଧି ଓ ଆଲମାରୀ ପଛରେ ଲୁଚେ ଓ ଟିଟୁ ମତେ ଖୋଜି ପାଇଯାଏ । କିନ୍ତୁ ମୁଁ ଯଦି ରେଲିଂ ଧରି ଝରକାରେ ଚଢ଼ିଯାଇ ଝରକାର ବଡ ପର୍ଦା ପଛରେ ଲୁଚିଯାଏ ସିଏ ମତେ ଖୋଜିକି ପାଏନି । ସେଇ ପଟେ ଦଶଥର ଯାଉଥିବ କିନ୍ତୁ ଜାଣି ପାରୁନଥିବ । ମତେ ବହୁତ ହସ ଲାଗେ । ମୁଁ ହସିଦେଲେ ଟିଟୁ ଜାଣି ପାରି ମୋ ଗୋଡକୁ ଧରିପକାଏ । ନାନୀର ସ୍କୁଲ ଛୁଟି ଥିଲେ ସିଏ ବି ଆମ ସାଂଗରେ ଖେଳେ ।

କେତେଦିନ ହେଲାଣି ନାନୀ ଟିଟୁ ସାଂଗେ କଟି କରିଦେଇଛି । ଦିନେ ଘରେ ପାପା, ମା' କେହି ନଥିଲେ । ମୁଁ ପଢ଼ାଘର ଟେବୁଲ୍‌ରେ ହୋମ୍‌ୱାର୍କ କରୁଥିଲି । ନାନୀ ଆର ଘରେ ତଳେ ବସି ଡ୍ରଇଂ କରୁଥିଲା । ଫୋନ୍ ଆସିବାରୁ ନାନୀ ଫୋନ୍ ଧରିବାକୁ ଚାଲିଗଲା । ସେତିକିବେଳେ ଟିଟୁ ନାନୀର ଡ୍ରଇଂ ଖାତା ଉପରେ ବସିପଡି କ୍ରେୟନ୍ କୁ ଦାନ୍ତରେ କାମୁଡ଼ି ଖଣ୍ଡ ଖଣ୍ଡ କରିଦେଲା । ଟିଟୁ ବୋଧେ ତାକୁ ଚକ୍‌ଲେଟ୍ ଭାବିଥିଲା । ସେ ଦିନ ନାନୀ ବହୁତ ରାଗିଗଲା । ନାନୀର ପାଟି ଶୁଣି ମୁଁ ଦୌଡ଼ି ଆସି ଟିଟୁ କୁ ଜଗିଲେ ବି ନାନୀ ବଡ ସ୍କେଲରେ ତା ପିଠିରେ ଦୁଇ ପାହାର ପକାଇଲା । କେବେ ମାଡ ଖାଇନଥିବା ଟିଟୁ ନାନୀର ହାତକୁ ଜୋରରେ କାମୁଡି ଦେଲା । ନାନୀ ସେ ଦିନ ବହୁତ କାନ୍ଦିଲା ଓ ମା' ଆସିଲାରୁ ତାକୁ ହାତ ଦେଖାଇ କହିଲା-'ଦେଖ, ତମ ଟିକି ଟୋକା ମୋହାତକୁ କ'ଣ କରିଛି । ତାକୁ ଏବେ ତୁମେ ପିଟ ।' ନାନୀର ହାତକୁ ଧୋଇଦେଇ ମା' ମଲମ ଲଗାଇଦେଲେ କିନ୍ତୁ ଟିଟୁ କୁ ପିଟି

ନଥିଲେ । ପାପା ଆସିବା ପରେ ନାନୀ କୁ ଡାକ୍ତରଖାନା ନେଇଥିଲେ ଓ ଫେରିବା ବେଳେ ବଜାର ଯାଇ ନାନୀ ପାଇଁ ନୂଆ ଡ୍ରଇଂ ଖାତା, କ୍ରେୟନ ଓ କାଡବରି ଚକ୍‌ଲେଟ୍ କିଣେଇ ଦେଇଥିଲେ । ନାନୀ ସବୁ ଚକ୍‌ଲେଟ୍ ମତେ ଓ ଟିଟୁକୁ ଦେଖେଇ ଦେଖେଇ ଖାଇଲା । ଆମକୁ ଟିକେ ବି ଦେଲାନି । କେବେକେବେ ନାନୀ ମୋ ସ୍କୁଲ ବ୍ୟାଗ୍‌ରେ ଲାଗିଲେ ମୁଁ ତାକୁ ଗୋଇଠା ମାରେ । ନାନୀ ମତେ ନ ପାରି ମୋ ହାତକୁ କାମୁଡି ଦିଏ । କିନ୍ତୁ ପାପା କେବେ ବି ମତେ ଡାକ୍ତରଖାନା ନେଇ ନାହାନ୍ତି କି ଚକ୍‌ଲେଟ୍ କିଣେଇ ଦେଇ ନାହାନ୍ତି । ନାନୀ ହାତକୁ କାମୁଡିବା ପରଠାରୁ ସିଏ ଆଉ ଟିଟୁ କୁ ଭଲ ପାଉନି । ଟିଟୁ କୁ ନାନୀ ଆଉ ଗେଲ କରୁନି । ପୁଣି ତା ଉପରେ ବିନା କାରଣରେ ରାଗୁଛି । ନାନୀର ସାଙ୍ଗମାନେ ବି ଟିଟୁକୁ ଭଲ ପାଉନାହାନ୍ତି । ନାନୀ ବୋଧେ ସେମାନଙ୍କୁ ଟିଟୁର କାମୁଡିବା କଥା କହିଦେଇଛି । ତେଣୁ ସେମାନେ ଡରୁଛନ୍ତି । ଆଜିକାଲି ନାନୀର ସାଙ୍ଗମାନେ ଆସିଲେ ସିଏ ମା'ଙ୍କୁ କହେ ଟିଟୁକୁ ଶୋଇବା ଘରେ କବାଟ ବନ୍ଦ କରି ରଖିବା ପାଇଁ । ଇଚ୍ଛା ନଥିଲେ ମଧ ମା ତାକୁ ଶୋଇବା ଘରକୁ ନେଇ ଯାଆନ୍ତି ଓ ନିଜେ ତା ସାଂଗରେ ରୁହନ୍ତି । ନାନୀ ସାଂଗମାନେ ଘରୁ ବାହାରିଯିବା ପର୍ଯ୍ୟନ୍ତ ।

ମୋ ସାଂଗମାନେ ନାନୀର ସାଂଗମାନଙ୍କ ଭଳି ନୁହନ୍ତି । ସେମାନେ ଟିଟୁ କୁ ବହୁତ ଭଲପାଆନ୍ତି ଓ ଗେଲ କରନ୍ତି । ସେମାନଙ୍କ ଜନ୍ମଦିନ ଥିଲେ ତା ପାଇଁ କେକ୍ ଆଣନ୍ତି । ଟିଟୁ କେକ୍ ଖାଇବାକୁ ଖୁବ୍ ଭଲପାଏ । କିନ୍ତୁ କେକ୍‌ଠାରୁ କୁକୁଡା ମାଂସ ଆହୁରି ଭଲପାଏ । ମା' କାଲି କହୁଥିଲେ ଜେଜେମା ଆସିଲାପରେ ଘରେ କୁକୁଡା ମାଂସ ରନ୍ଧା ହେବନି । ସିଏ ମାଂସ ଖାଆନ୍ତିନି, ଖାଲି ମାଛ ଖାଆନ୍ତି । ଏବେ ଟିଟୁ କୁ ଭାତ ଖୁଆଇବା ପାଇଁ ମା ହଇରାଣ ହେବେ । କୁକୁଡା ମାଂସ ରନ୍ଧା ନ ହେଇଥିବା ଦିନ ମା' କୁ ଗୁଣ୍ଡା ଗୁଣ୍ଡା କରି ତାକୁ ଖୁଆଇବାକୁ ପଡେ । କେତେଥର ପାଟିରୁ ଭାତ କାଢ଼ି ପକାଏ ସିଏ । କୁକୁଡା ମାଂସ ରନ୍ଧା ହେଇଥିବା ଦିନ ମା ବାଢ଼ି କି ଦେଇଦେଲେ ସିଏ ନିଜେ ଖାଇଦିଏ । ଘରେ ସବୁ ରବିବାର ଓ ବୁଧବାର ଚିକେନ୍ ରନ୍ଧାହୁଏ । ତା ପର ଦିନ ଟିଟୁ ଖାଇବା ପାଇଁ ମା' ଦୁଇଖଣ୍ଡ ମାଂସ ଓ ଟିକେ ଝୋଳ ଫ୍ରିଜ୍‌ରେ ରଖିଦେଇଥାନ୍ତି । ଟିଟୁ ଏବେ କ'ଣ ଲଗାଇ ଭାତ ଖାଇବ ? ସିଏ ମାଛ ଖାଇ ପାରିବ ? ମାଛ ଖାଇଲାବେଳେ ଯଦି ତା ତଣ୍ଟିରେ କଣ୍ଟା ଲାଗିଯିବ-ଯେମିତି ନାନୀର ଦିନେ ଲାଗିଯାଇଥିଲା ଓ ତାକୁ ଡାକ୍ତର ଖାନା ନେବାକୁ ପଡିଥିଲା । ଟିଟୁ ତଣ୍ଟିରେ କଣ୍ଟା ଲାଗିଲେ ସିଏ ତ କହି ପାରିବନି । କ'ଣ ହବ ତାହେଲେ ?

ମୁଁ ମା' କୁ ପଚାରିଲି-'ଜେଜେମା କାହିଁକି କୁକୁଡା ମାଂସ ନ ଖାଇ ମାଛ ଖାଆନ୍ତି ?'

ମା କହିଲେ ଜେଜେମା କୁହନ୍ତି କୁକୁଡା ମାଂସ ଖାଇଲେ ଲକ୍ଷ୍ମୀ ଠାକୁରାଣୀ ରାଗିଯାଆନ୍ତି । ମୁଁ ଜାଣି ପାରିଲି ଜେଜେମା କୁ କୁକୁଡା ମାଂସ ଭଲ ଲାଗେନି । ସେଇଥିପାଇଁ ସିଏ କଥା କହିପାରୁନଥିବା ଲକ୍ଷ୍ମୀ ଠାକୁରାଣୀଙ୍କ ନାଁ ଦେଇ ଦେଉଛନ୍ତି । ଯେମିତି ଟିଟୁ କଥା କହିପାରେନି ବୋଲି ଜାଣି ଘରେ କେହି ନଥିଲାବେଳେ ଯିଏ ଯାହା ଜିନିଷ ଭାଙ୍ଗେ ଫୁଲ ମାଉସୀ ଟିଟୁର ନାଁ ଦେଇଦିଏ ।

ଆରେ, ପାପା ଙ୍କ ଗାଡି ଆସିଗଲା । ଗାଡି ଭିତରେ ଜେଜେମା ବସିଛନ୍ତି । ନାନୀ ଗ୍ରିଲ୍ ଖୋଲି ଦୌଡ଼ିଲା । ମୁଁ ବି ଟିଟୁକୁ କୋଳରୁ ଓହ୍ଲାଇ ଦେଇ ନାନୀ ପଛେ ପଛେ ଗେଟ୍‌ର ପାଖକୁ ଦୌଡ଼ିଲି । ଜେଜେମାଙ୍କୁ ଆମେ ଦୁଇଜଣ ପାଦ ଛୁଇଁ ପ୍ରଣାମ କରୁ କରୁ ସିଏ ମତେ କାଖ କରି ପକାଇଲେ ଓ ଆର ହାତରେ ନାନୀ କୁ ନିଜ ଆଡକୁ ଆଉଜେଇ ଆଣି କହିଲେ- 'ଆରେ! ନିତୁ ମା, କିଟୁ ବାବା ଦୁଇଜଣ ଯାକ ଲମ୍ବା ହେଇଗଲେଣି । ଏତିକିବେଳେ ଆଉଜା ଗ୍ରିଲ୍ କୁ ଠେଲି ଟିଟୁ ଜେଜେମା'ଙ୍କ ପାଖକୁ ଆସି ତାଙ୍କ ଗୋଡକୁ ଧରିପକାଇଲା ।

ଜେଜେମା ଛାନିଆ ହେଇ ପାଟି କରି ଉଠିଲେ'ଏହେ ! କୁକୁରଟାକୁ ଚେନ୍‌ରେ ନ ବାନ୍ଧି ଏମିତି ଖୋଲା କାହିଁକି ଛାଡ଼ିଚ ? ମତେ ଛୁଇଁ ସାରିଲାଣି ଏ କୁକୁର ।

ଜେଜେମା ଟିଟୁ କୁ କୁକୁର କହିଲାରୁ ମତେ ଭଲ ଲାଗିଲାନି । ତାକୁ ଆମ ଘରେ କେହି କୁକୁର ଡାକନ୍ତିନି । ମୁଁ ଜେଜେମା ଙ୍କ କାଖରୁ ଓହ୍ଲାଇପଡି ଟିଟୁ କୁ ଦୁଇ ହାତରେ ତାଙ୍କ ଗୋଡ ପାଖରୁ ଉଠାଇ ଆଣି କହିଲି-'ଜେଜେମା ଆମେ ତ ମଣିଷ । ତୁମେ କ'ଣ ଆମକୁ ମଣିଷ ବୋଲି ଡାକୁଛ ? ତାକୁ କାହିଁକି କୁକୁର କହୁଛ ? ତାର କ'ଣ ନା ନାହିଁ ? ମୁଁ ପରା ଫୋନ୍‌ରେ ତୁମକୁ କେତେଥର କହିଛି, ତା ନାଁ ଟିଟୁ ।'

□□□

# ବାତ୍ସଲ୍ୟ

ଏତେ ଛୋଟ କଥା ପାଇଁ ଯେ ଶାଶୁ ରୁଷିବେ, ଏ କଥା ମିତା ସ୍ୱପ୍ନରେ ସୁଦ୍ଧା ଭାବି ନଥିଲା । ନହେଲେ କ'ଣ ପାଇଁ ମିହିରଙ୍କ ଲାଗି ରଖାହୋଇଥିବା ଚିଙ୍ଗୁଡ଼ିକୁ ଭାଜି ମିଟୁକୁ ଦେଇଥା'ନ୍ତା ? ଚିଙ୍ଗୁଡ଼ି ବଛା ସରୁ ସରୁ ଶାଶୁ ବଡ ବଡ ଚିଙ୍ଗୁଡ଼ିତକ ବାଛି ମିହିରଙ୍କ ପାଇଁ ଫ୍ରିଜରେ ରଖିଦେଲେ । ବାକି ଚିଙ୍ଗୁଡ଼ି ମିଟୁ ପାଇଁ ରନ୍ଧା ହେଲା । ମିହିର ଭାତ ଖାଇ ବସିଲାବେଳେ ପିଠୋଉ ଦିଆ ହେଇ ତାଙ୍କପାଇଁ ଭଜା ହେବ ବୋଲି ଶାଶୁ କହି ରଖିଲେ ।

ମିହିର ଡାକ୍ତରଖାନାରୁ ଫେରିଲା ବେଳକୁ ପ୍ରାୟ ସାଢ଼େ ଗୋଟେ, ଦୁଇଟା ହୋଇଯାଏ । ଆଗରୁ ଭାଜିଦେଲେ ଥଣ୍ଡା ହୋଇ ସ୍ୱାଦ ଖରାପ ହୋଇଯିବ ବୋଲି ଶାଶୁ ସେମିତି କହିଥିଲେ । ଶାଶୁ ଯେତେବେଳେ ଗାଁରୁ ଆସନ୍ତି ମିହିର ଓ ମିତାଙ୍କ ପାଖରେ ରହିବାକୁ, ସେତିକିଦିନ ଶାଶୁଙ୍କ ବରାଦରେ ହିଁ ରୋଷେଇ ହୁଏ । ଆଜି ଶାଶୁ ଶ୍ୱଶୁରଙ୍କ ପାଇଁ ଆମ୍ବୁଲ, କଂଚା ଲଙ୍କା, ରସୁଣ ପଡି ମାଛ ବେସର ହେଇଛି । ସାଦାରେ ଫୁଲକୋବି ଆଳୁ ଝୋଳ ଓ ଟମାଟୋ ଖଟା ହେଇଛି । ମିଟୁ କିନ୍ତୁ ଆଦୌ ପରିବା ତରକାରୀ ଖାଏ ନାହିଁ । ସିଏ ଭଲପାଏ କୁକୁଡା ମାଂସ ଓ ଚିଙ୍ଗୁଡି । ମିହିର ମଧ୍ୟ ଠିକ୍ ସେଇ ଜିନିଷ ହିଁ ପସନ୍ଦ କରନ୍ତି । ଆଜି ଶନିବାର ଥିଲା ଓ ଆଗରେ ଟେଷ୍ଟ୍ ପରୀକ୍ଷା ଥିବାରୁ ମିଟୁ ଆଜି ସ୍କୁଲ ଯାଇ ନଥିଲା । ଆସନ୍ତା ମାର୍ଚ୍ଚ ମାସରେ ସିଏ ମାଟ୍ରିକ୍ ପରୀକ୍ଷା ଦେବ । ମିଟୁ ପାଇଁ ଗରମ ମସଲା ପଡ଼ି ଚିଙ୍ଗୁଡ଼ି ଝୋଳ ହୋଇଥିଲା । ପ୍ରାୟ ବାରଟା ବେଳକୁ ମିଟୁ ଖାଇବାକୁ ମାଗିଲା । ମିତା, ଭାତ ଡାଲି ଓ ସବୁତକ ମାଛ ତରକାରୀ ତା ପାଇଁ ବାଢ଼ିଦେଲା । ଦୁଇ ଗୁଣ୍ଡାରେ ମାଛ ତକ ଖାଇ ଦେଇ ଆଉ ତରକାରୀ ମାଗିଲା ମିଟୁ । ତରକାରୀ ନ ଦେଲେ ବାକି ଭାତ ଆଉ ଖାଇବନି କହିଲାରୁ ମିତା ବାଧ ହୋଇ ଫ୍ରିଜ୍‌ରେ ଥିବା ଚିଙ୍ଗୁଡିକୁ ତରତରରେ ଭାଜି ଦେଇଦେଲା ଓ ମିଟୁ ପୋଛାପୋଛି କରି ଭାତ ଖାଇଦେଲା । ଶାଶୁ ଶୋଇଲାଘରୁ କିଛି ଅନୁମାନ କଲେ ବୋଧେ । ତେଣୁ ଶୋଇବାଘରୁ ଉଠି ଆସି ପଚାରିଲେ, 'ମହି ଆସିବାକୁ ଡେରି ଅଛି, ଏବେଠୁ କାହିଁକି ମାଛ ଭାଜିଦେଲୁ ?' ମିତା କହିଲା ମାଛତକ ଭାଜିକି ମିଟୁକୁ ଦେଲା, ନ ହେଲେ ସିଏ ଅଧାପେଟରେ ରହିଥାଆନ୍ତା । ଏ କଥା ଶୁଣି ଶାଶୁ ସାଙ୍ଗେ ସାଙ୍ଗେ ରାଗିଗଲେ ଓ କହିଲେ ଅଧକେଜି ମାଛି ଏକା ସିଏ କେମିତି ଖାଇଦେଲା ? ତାପରେ ବୁଲିପଡି ଶୋଇବା ଘରକୁ ଚାଲିଗଲେ ଓ ଗଲାବେଳେ କହିଲେ ଆଜି ସିଏ ଭାତ ଖାଇବେନି । ଅବାକ୍ ହେଲା ମିତା ।

ଅଧକେଜିରେ ତ ମାତ୍ର ସତର, ଅଠରଟି ଚିଙ୍ଗୁଡି ଉଠିଥିଲା । ପୁଣି ମୁଣ୍ଡ ଛାଞ୍ଚ ଚୋପା ଗଲାପରେ ଓଜନରେ ପାଏ ଖଣ୍ଡେ ହୋଇଥିବ । ତା ଛଡା କୋଉ ବାହାରଲୋକ ଖାଇଦେଲା ? ନିଜର ନାତି ତ ଖାଇଛି । ମିଟୁ ଖାଇଦେଲା ବୋଲି ମିହିର କ'ଣ ମନକଷ୍ଟ କରିବେ ? ବରଂ ଖୁସି ହେବେ । ମିହିର ଫୁଲକୋବି ତ ଖୁବ୍ ଭଲପାନ୍ତି । ମାଛ ସିନା ଭଲ ଲାଗେନି ବୋଲି ଖାଇବେନି । ତା ଛଡା ଖାଇଲାବେଳେ ପାମ୍ପଡ଼ ଓ ବଡି ଭାଜିଦେଲେ କେତେ ଖୁସିରେ ଭାତ ଖାଇଦେବେ । କିନ୍ତୁ କିଏ ବୁଝାଇବ ଶାଶୁଙ୍କୁ ? ସିଏ ବୋଧେ ଭାବୁଥିବେ ମିତା ଆଇଁଷ ଖାଉନି ବୋଲି ଭାବୁଛି ମିହିର ମଧ ଆଇଁଷ ନ ଖାଉ ଆଉ ସେଇଥିପାଇଁ ପୁଅକୁ ସବୁତକ ଚିଙ୍ଗୁଡି ଭାଜିକି ଦେଇଦେଲା ।

ଶ୍ୱଶୁର ଆସି ଖାଇବାକୁ ମାଗିଲେ । ବାଢ଼ିଲାବେଳେ ମିତା ସବୁକଥା ବଖାଣି ବସିଲା ତାଙ୍କ ଆଗରେ । ଭାବିଥିଲା ସିଏ ମିତା ପଟିଆ ବାହାରିବେ । ନ ହେଲେ ଶାଶୁଙ୍କୁ ବୁଝାଇବେ ନ ରାଗିବା ପାଇଁ । କିନ୍ତୁ ସବୁ ଶୁଣିସାରି ସିଏ କହିଲେ, 'ଇଏ ତ ରୀତିମତ ଦୁଇ ମା'ଙ୍କ ଭିତରେ ପ୍ରତିଯୋଗିତା । କାହା ପୁଅକୁ କିଏ କେତେ ଖୁଆଇ ପାରିଲା ।' ତା ପରେ ତାଙ୍କୁ ଏ ଭିତରେ ନ ପୂରାଇବାକୁ କହି ଆରାମରେ ଖାଇସାରି ଉଠିଗଲେ । କାହିଁକିନା ସିଏ ଜାଣିଥିଲେ ଯେ ମିହିରଙ୍କ ଖାଇବା କଥାରେ ଶାଶୁ ଜମାରୁ ସାଲିସ କରିବେନି । ଯଦି ଶ୍ୱଶୁର କିଛି ହସ୍ତକ୍ଷେପ କରିବେ ତାହେଲେ ସମସ୍ୟା ଜଟିଳ ହେବ ସିନା କମିବ ନାହିଁ । ତେଣୁ ଖାଇସାରି ସିଏ ଯାଇ ଶୋଇପଡ଼ିଲେ । ଦୁଇମିନିଟ୍ ପରେ ତାଙ୍କ ଘୁଙ୍ଗୁଡ଼ି ଶୁଣିବାକୁ ପାଇଲା ମିତା ।

ମିତାର ଯେତେଥର ମନାନ୍ତର ହେଇଛି ଶାଶୁଙ୍କ ସାଙ୍ଗେ ସବୁବେଳେ ସେଇ ମିହିରଙ୍କ ଖାଇବା ନେଇ । ମିହିର ମୋଟା ହୋଇଯାଉଛନ୍ତି । ତେଣୁ ତାଙ୍କ ଖାଇବା ଉପରେ ମିତାର କଡା ନଜର । ତା ଛଡା ଓଜନ କମ୍ କରିବା ପାଇଁ ପାହାନ୍ତିଆରୁ ତାଙ୍କୁ ଉଠାଇ ଚାଲିବା ପାଇଁ ପଠାଏ ମିତା । ଦିନସାରା ଖାଇବାର କାଲୋରୀ ହିସାବ କରେ ମଧ । ସକାଳ ଜଳଖିଆରେ ଯେମିତି ଦେହକୁ ଟୋପେ ବି ତେଲ ନଯାଏ ସେଥିପାଇଁ ଜଳଖିଆରେ ଦିଏ ଚୁଡ଼ା ଦହି ନ ହେଲେ ରୁଟି ସନ୍ତୁଳା କିମ୍ବା ଇଡ଼ଲି ସମ୍ବର । ଆଉ ମଧାହ୍ନ ଭୋଜନରେ ଦିଏ ଭାତ, ଡାଲି, ସାଲାଡ, ଶାଗ ଓ ବେଶୀ ଫାଇବର ଥିବା ତରକାରୀ । ପୁରୀ, ପରଟା, ଛଣା ଛଣି ପୂରା ବନ୍ଦ । ଅବଶ୍ୟ ମିଟୁ ପାଇଁ ଏ ନିୟମ ଲାଗୁ କରେନି ମିତା । ତା'ପାଇଁ ସବୁ ଛାଡ । ମିତା ଭାବେ ବଢ଼ିଲା ପିଲା-ଖାଇବା କମ କରିଦେଲେ ରେଣ୍ଡୁଆ ହେଇଯିବ ଚେହେରା । ପ୍ରତ୍ୟେକ ଦିନ ମିହିର ରାତି ସାତଟା, ସାଢ଼େ ସାତଟାରେ ଡାକ୍ତରଖାନାରୁ ଫେରୁ ଫେରୁ ରାତି ଖାଇବା ଟେବୁଲ୍ ଉପରେ ରଖିଦିଏ ମିତା । ସେତେବେଳେ ଜଳଖିଆ ଦେଲେ ପୁଣି ରାତି ଦଶଟାରେ

ଆଉଥରେ କିଛି କାଲୋରୀ ଦେହକୁ ଚାଲିଯିବ ବୋଲି । ପୁଣି ମିହିର ଟକଳା ସ୍ୱଭାବର ବୋଲି ମିକ୍ସଚର, ମୁଡ଼ୁକି, ବାଦାମ ଆଦି ସିଏ ତାଲା ପକାଇ ରଖେ । କିନ୍ତୁ ଶାଶୁ ଯେମିତି ଗାଁରୁ ଆସି ପହଞ୍ଚିଯାଆନ୍ତି ତାଲାସବୁ ଖୋଲାହୋଇଯାଏ ଓ ଘରେ ଖିଆପିଆର ସୁଅ ଛୁଟେ । ସକାଳ ଜଳଖିଆର ମେନୁ ବଦଳିଯାଇ ହୋଇଯାଏ ପୁରୀ, ତରକାରୀ, ମିଠା ନହେଲେ ଭଲକରି ତେଲ ପଡି କଡକଡିଆ ଦୋଷା । ସାଙ୍ଗରେ ନଡିଆ ଚଟଣୀ । ଆଉ ଦିନବେଳେ ଖାଇବା ପାଇଁ କେଉଁଦିନ, ଖିରୀ, ଖେଚେଡ଼ି ତ କେଉଁଦିନ ପ୍ରନ୍ ପଲାଉ ଓ ମଲାଇ କୋପ୍ତା । ଏବଂ ସାଙ୍ଗରେ ଯେତେପ୍ରକାର ଭଜା ହୋଇପାରିଲା । ମସଲାଦିଆ କଲିଜା ଭଜାଠୁ କଖାରୁ ଫୁଲ ଭଜାଯାଏ । ପାଖରେ ବସି ପୁଅକୁ ବଳେଇ ବଳେଇ ଖୁଆଉଥିବେ ଟଣ୍ଡିଯାଏ । ତେବେ ବି ଭାବନ୍ତି ପରିଶ୍ରମ ଅନୁସାରେ ପୁଅର ଖାଇବା କମ୍ ହେଇଯାଉଛି । ଶାଶୁଙ୍କୁ ଖୁସି କରାଇବାର ସୂତ୍ର ଥିଲା ମିହିରଙ୍କୁ ଭଲ ମନ୍ଦ କରି ଖୁଆଇବା । କିନ୍ତୁ ମିତା ସେ ସବୁ କରି ପାରୁନଥିଲା ମିହିରଙ୍କ ବୟସ ଓ ଓଜନ ପାଇଁ । ଅଥଚ ଶାଶୁ ସବୁବେଳେ ଭାବନ୍ତି ମିତା ତାଙ୍କ ପୁଅର ଯତ୍ନ ନେଉନି । ତେଣୁ ଯେତେଦିନ ସିଏ ରହନ୍ତି ସେତେଦିନ ମିହିର ପରିମିତ ଆହାର ଖାଇବା କଟକଣାରୁ ମୁକ୍ତ ହୋଇଯାଆନ୍ତି । ଛ'ମାସ, ବର୍ଷେ ଲାଗି କମାଇଥିବା ଓଜନ ପୁଣି ବଢ଼ିଯାଏ ମାତ୍ର ମାସକ ଭିତରେ । ନିଜ ପୁଅ ପାଇଁ ସବୁବେଳେ ବ୍ୟସ୍ତ କିନ୍ତୁ ନାତି ପାଇଁ ନୁହେଁ । ମିଟୁ ଯଦି ସ୍କୁଲରୁ ଫେରି କିଛି ନଖାଇ ଖେଳିବାକୁ ପଳାଇଲା ଆଉ ମିତା ବ୍ୟସ୍ତ ହେଲା ତା ହେଲେ କହିବେ 'ସିଏ ସ୍କୁଲରେ ସାଙ୍ଗ ମାନଙ୍କ ସାଙ୍ଗରେ ନିଶ୍ଚେ କିଛି ଖାଇଥିବ । ତୁ ତା ପାଇଁ ବ୍ୟସ୍ତ ହୁଅନା ।' କେବେ ଯଦି ରାତିରେ ନଖାଇ ଶୋଇପଡେ ଓ ମିତା ତାକୁ ଉଠାଇବାକୁ ଯାଏ ସେତେବେଳେ କହିବେ 'ଶୋଇଲାପିଲାକୁ ଉଠାନା, ଭୋକ ଲାଗିଲେ ବଳେ ଉଠିବ ।' ଅଥଚ ନିଜର ଦରବୁଢ଼ା ପୁଅଟି ପାଇଁ ଯେତକ ଚିନ୍ତା ।

ଦରବୁଢ଼ା ପୁଅ କଥାରୁ ମିତାର ମନେ ପଡିଲା ପିଲାଦିନେ ବୋଉ ଯେତେବେଳେ ବାପାଙ୍କ ପାଇଁ ଭାତ ବାଢ଼େ, ବୁଢ଼ୀମା ସାଙ୍ଗେ ସାଙ୍ଗେ ନାତିନାତୁଣୀମାନଙ୍କୁ ବାଆଁରେଇ ଦାଣ ଆଡକୁ ନହେଲେ ବାରିପଟକୁ ନେଇଯାନ୍ତି । ଆଉ ରାତିରେ ବାପା ଖାଇବା ଆଗରୁ ସମସ୍ତଙ୍କୁ ଖୁଆଇ ଶୁଆଇ ଦିଅନ୍ତି । ମିତା ଓ ଭାଇନା ସେତେବେଳକୁ ଟିକେ ବଡ ହେଇଯାଥା'ନ୍ତି । ତେଣୁ ସେ ଦୁଇ ଜଣ ଶୋଇବାର ଅଭିନୟ କରନ୍ତି । ଆଉ ବାପାଙ୍କ ଖାଇବା ବଢ଼ା ହେଇଗଲେ ମିଛରେ ଆଖି ମଳି ମଳି ଶେଯରୁ ଉଠି ଆସନ୍ତି ଓ ବୁଢ଼ୀମା କେବଳ ବାପାଙ୍କ ପାଇଁ ତିଆରି କରିଥିବା ସ୍ୱତନ୍ତ୍ର ତରକାରୀରୁ ଭାଗ ନିଅନ୍ତି । ସେଥିପାଇଁ ବୁଢ଼ୀମା ରାଗିଯା'ନ୍ତି ଓ କହନ୍ତି-

ପିଲାମାନଙ୍କ ପାଇଁ ତାଙ୍କ ପୁଅ ଶାନ୍ତିରେ ମୁଠେ ଖାଇପାରୁନି । ବୁଢ଼ୀମା ସେମିତି କହିଲାବେଳକୁ ବୋଉ ପିଲାମାନଙ୍କୁ ଚାହିଁ ହସିଦିଏ ।

ବୋଉ ମଧ୍ୟ ନିଜ ପିଲାମାନଙ୍କ ସାଙ୍ଗରେ ସେଇଭଳି ବ୍ୟବହାର କରେ । ମିତାର ମନେଅଛି-ଥରଟେ ସିଏ ବାଲେଶ୍ୱର ଯାଇଥାଏ । ମିଟୁ ସେତେବେଳେ ଚାରି ପାଞ୍ଚ ବର୍ଷର । ବୋଉ ସାଙ୍ଗେ ବାରିରେ ବୁଲୁଥିଲାବେଳେ ରଂଜାରେ ଲଟେଇଥିବା କାକୁଡି ଗଛରୁ ଫୁଲ ଲାଗିଥିବା କଣ୍ଟାଯୁକ୍ତ କୁନି କାକୁଡିଟିଏ ଗଛରୁ ଛିଣ୍ଡାଇ ବୋଉ ମିତା ହାତକୁ ଦେଇଥିଲା ବେଳେ ମିଟୁ ତା' ହାତରୁ ସେ ଗୋଟିକ ଛଡେଇ ନେଇ ଖାଇଦେଇଥିଲା । ଆଉ ସେଥିପାଇଁ ହଠାତ୍ ରାଗରେ ଜର୍ଜରିତ ହୋଇ ବୋଉ ମିଟୁକୁ ଗୋଟେ ଚଟକଣା ପକାଇଥିଲା । ବୋଉର ଏତାଦୃଶ ବ୍ୟବହାରରେ ମିତା ସ୍ତବ୍ଧ ଓ ତଟସ୍ଥ ହୋଇଥିଲା । ଅବଶ୍ୟ ପରେ ବୋଉ ନିଜର ବ୍ୟବହାର ପାଇଁ ଖୁବ୍ ଲଜ୍ଜିତ ହେଇଥିଲା ଓ ମିଟୁକୁ ବହୁତ ଗେଲ କରିଥିଲା ।

କଲିଂବେଲ୍ ବାଜିବାରୁ ସମ୍ବିତ୍ ଫେରି ପାଇଲା ମିତା । କବାଟ ଖୋଲି ଦେଖିଲା ସାମନାରେ ଭାଇନାଙ୍କ ପୁଅ ବୁନୁ । 'ଏବେ ଏବେ ବାପା ବାଲେଶ୍ୱରରୁ ଫେରିଲେ, ତୁମ ପାଇଁ ଯାକୁ ଜେଜେମା ପଠାଇଛନ୍ତି' କହି ମିତା ହାତକୁ ଟିଫିନ୍ କେରିଅର୍ ବଢ଼ାଇଦେଇ ଟ୍ୟୁସନ ଅଛି ବୋଲି ତରତରରେ ଫେରିଗଲା ବୁନୁ । ମିତାର ମନେପଡିଲା ଦୁଇଦିନ ତଳେ ଭାଇନା ବାପାଙ୍କ ଘର ବାଲେଶ୍ୱରକୁ ଯାଇଥିଲେ । ଭାଇନା ଯେତେବେଳେ ଘରକୁ ଯାଆନ୍ତି, ବୋଉ ସବୁବେଳେ ମିତା ଭଲପାଏ ବୋଲି ଚିଙ୍ଗୁଡ଼ି ଭାଜିକି ପଠାଏ । ବୋଉ ଜାଣିନି ମିତା ଯା ଭିତରେ ଆମିଷ ଛାଡି ସାରିଲାଣି ଓ ଭାଇନା ବୋଧହୁଏ ଏ କଥାଟି ତାକୁ କହିବାକୁ ଭୁଲିଯାଇଛନ୍ତି । ମିତା ମୁଣ୍ଡରୁ ଗୋଟେ ବୋଝ ଉତୁରିଗଲା । ନ ହେଲେ ଆଜିର ସମସ୍ୟା କେମିତି ସମାଧାନ କରିଥା'ନ୍ତା ସିଏ ? ଚିଙ୍ଗୁଡ଼ି ଟିଫିନ୍‌ଟିକୁ ଗରମ କରିବା ପାଇଁ ଓ.ଟି.ଜି.ରେ ରଖିଦେଇ ମିତା ଗଲା ଶାଶୁଙ୍କ ଶୋଇବା ଘରକୁ । ଆଖିକୁ ଜବରଦସ୍ତି ବନ୍ଦକରି ଚିତ୍ ହୋଇ ଶୋଇଛନ୍ତି ଶାଶୁ । ନିଶ୍ୱାସ କିନ୍ତୁ ପ୍ରଖର ଗତିରେ ଚାଲୁଛି । ମିତାର ମନ ହାଲକା ହେଇଯାଇଥାଏ ଭଜା ଚିଙ୍ଗୁଡ଼ି ପାଇ, ତେଣୁ ଶାଶୁଙ୍କ ମୁହଁ ଦେଖି ତାକୁ ଭାରି ହସ ଲାଗିଲା । ଶାଶୁଙ୍କ ମୁହଁଟି ତାକୁ ଦିଶିଲା ବୁଢୀମା'ଙ୍କ ମୁହଁପରି, ଅନେକାଂଶରେ ବୋଉ ମୁହଁ ପରି ମଧ୍ୟ । ମିତା ଆସିଲା ଜାଣିପାରି ଶାଶୁ କଡ ଲେଉଟେଇ କାନ୍ଥ ଆଡକୁ ମୁହଁକରି ଶୋଇଲେ । ମିତା ତାଙ୍କୁ ହଲେଇଦେଇ କହିଲା 'ବୋଉ ଆସନ୍ତୁ ଖାଇବେ । ଆପଣଙ୍କ ପୁଅପାଇଁ ଚିଙ୍ଗୁଡି ଭଜା ଅଛି ।'



# ସୋହାଗ

ଯେଉଁଦିନଠାରୁ ମିଟୁ ରାଉରକେଲା ଆର୍,ଇ,ସି,ରେ ପଢ଼ିବାକୁ ଗଲାଣି, ସେହିଦିନରୁ ମିତା ମନ ମାରି ରହୁଛନ୍ତି। ସବୁବେଳେ କାନ୍ଦ କାନ୍ଦ ଚେହେରା। ହଷ୍ଟେଲରେ ପୁଅ କେମିତି ରହୁଥିବ, କଣ ଖାଉଥିବ ? ମା ଛଡ଼ା ଅନ୍ୟ କାହା ହାତରେ ସିଏ ଖାଏନି। ଖାଇଲାବେଳେ ଲକ୍ଷେ ଅଭିଯୋଗ କରେ, ଏଇଟା ଭଲ ହେଇନି ସେଇଲ ଭଲ ଲାଗୁନି। ଏବେ ମେସ୍ ରନ୍ଧା କେମିତି ଖାଉଥିବ ? ନିଜ ଲୁଗାପଟା ଠିକ୍‌ରେ ରଖି ପାରୁଥିବ କି ନାହିଁ ? ଜୀବନରେ ରୁମାଲଟେ କେବେ ଧୋଇନଥିବା ମିଟୁ କେମିତି ଲୁଗାପଟା ସଫାକରୁଥିବ। ମିହିର, ମିତା କେତେ କହିଲେ ଭୁବନେଶ୍ୱରରେ ପଢ଼, ଘରେ ରହିକି ପଢ଼ିବୁ, କେତେ ସୁବିଧା ହେବ। କଥା ମାନିଲାନି ମିଟୁ। ମିଟୁ ହଷ୍ଟେଲରେ ଫୋନ୍ ନାହିଁ। ନ ହେଲେ ପ୍ରତ୍ୟେକ ଦିନ ତା ପାଖରୁ ଫୋନ୍ କରୁଥାଆନ୍ତେ ମିତା। ତଥାପି ଏଇ ପନ୍ଦର ଦିନ ଭିତରେ ପାଞ୍ଚ, ଛଅ ଥର ଫୋନ୍ କରି ସାରିଲେଣି। ଆଉ ଦୁଇଥର ଫୋନ୍ କଲେଣି ମିହିରଙ୍କ ସାଙ୍ଗଙ୍କ ପାଖକୁ। ଯିଏ କି ମିଟୁର ଲୋକାଲ ଗାର୍ଡ଼ିଆନ ହେଇଛନ୍ତି। ତାଙ୍କୁ ଫୋନ୍ କରି ମିତା ଅନୁରୋଧ କରିଛନ୍ତି ସମୟ ହେଲେ ମଝିରେ ମଝିରେ ଯାଇ ଟିକେ ମିଟୁକୁ ଦେଖି ଆସିବାକୁ। କେବେ ଘର ଛାଡ଼ି କୁଆଡ଼େ ନଯାଇ ମିଟୁର ଫୋନ୍ କୁ ଅପେକ୍ଷା କରୁଛନ୍ତି ସଦାସର୍ବଦା। ଆଗରୁ ଫୋନ୍ କେତେ ରିଂ ହେଲେ ବି ଜମାରୁ ରିସିଭର ଉଠାନ୍ତିନି। କିନ୍ତୁ ଆଜିକାଲି ରିଂ ହେଲେ ଦୌଡ଼ିଯାଇ ଫୋନ୍ ଧରୁଛନ୍ତି, ଆଉ ସେଥିପାଇଁ ଥରେ ଦୁଇଥର ଝୁଣ୍ଟି ହାତ, ପାଦ ଖଣ୍ଡିଆ ବି କଲେଣି।

କାଲି ରାତିରେ ମିଟୁ ଫୋନ୍ କରି କହିଲା ତାଙ୍କ ହଷ୍ଟେଲରେ ପଣି ସିନିୟରମାନେ ଖୁବ୍ ର୍ୟାଗିଂ କରୁଛନ୍ତି। ବାସ୍, ତା ପରେ ଆଉ ମିତାଙ୍କୁ ସମ୍ଭାଳେ କିଏ ? ମିହିରଙ୍କ ସାଙ୍ଗେ ଲଗାଇଲେ ଦୁହେଁ ମିଶି ମିଟୁ ପାଖକୁ ଯିବାପାଇଁ। ପ୍ରଥମେ ମିହିର ମନା କରି କହିଲେ ସିଏ ବଡ଼ ପିଲା ହେଲାଣି, ତାକୁ ତାର ସମସ୍ୟା ସମାଧାନ କରିବାକୁ ଦିଅ। ସିଏ ସ୍ୱାବଲମ୍ବୀ ହେଉ। ମିତା କିନ୍ତୁ କିଛି ଶୁଣିନଥିଲେ। କହିଥିଲେ ମୁଁ ଜାଣିଛି ତୁମେ ସ୍ୱାର୍ଥପର। ତୁମକୁ ଯିବାକୁ କଷ୍ଟ ହେବ, ସେଥିପାଇଁ ଏ ସବୁ କହୁଛ। ତୁମେ ନଗଲେ ନାହିଁ। ବସ୍‌ରେ ଟିକେଟ କରିଦିଅ, ମୁଁ ଏକୁଟିଆ ଯିବି। ଏହାପରେ ମିହିରଙ୍କର ଆଉ ଉପାୟ ନଥିଲା। ତା ପରଦିନ ସକାଳୁ ଯାଇ ଦୁଇଟି ବସ ଟିକେଟ କରି ଆଣିଥିଲେ ଓ ହିସାବ କରିଥିଲେ ପ୍ରତି ପନ୍ଦର ଦିନରେ ଥରେ ରାଉରକେଲା ଗଲେ ଚାରିବର୍ଷ ଭିତରେ କେତେଥର ଯିବାକୁ ପଡିବ ?

ଟିକେଟ୍ ଆସିଲା ପରେ ସକାଳ ସାରା ଲାଗି କେକ୍, ଫେଣି ଗଜା ନଡ଼ିଆ କୋରା, ମୁଡ଼କୁ ଆଦି ତିଆରି କଲେ ମିତା । କିନ୍ତୁ ମିଟୁ ଏତେ ଖାଇବାପ୍ରିୟ ନୁହେଁ । ଏ ସବୁ ଜିନିଷ ଦେଖି ଖୁସି ହେବ କି ? ମନେପଡ଼ିଲା ସପ୍ତାହକ ଆଗେ ଭାଇନା ବମ୍ବେ ଯାଇଥିଲେ ଯେ ମିହିରଙ୍କ ପାଇଁ ଟି ସାର୍ଟଟେ ଆଣି ଦେଇଥିଲେ । ସେଇଟିକୁ ମିହିରଙ୍କୁ ନ ଦେଖାଇ ପୁଅ ପାଇଁ ରଖିଦେଇଛନ୍ତି । ସେ ସାର୍ଟଟି ବି ସାଙ୍ଗରେ ନେଇଯିବେ । ମିଟୁର କିନ୍ତୁ ଏତେ ଡ୍ରେସ୍ ସଉକି ନାହିଁ । ମିତା ଭାବିବାକୁ ଲାଗିଲେ କଣ ନେଲେ ମିଟୁ ଖୁସିହେବ । ହଁ, ସିଏ ବଲ୍ ଖେଳିବାକୁ ଭଲପାଏ । ପିଲାବେଳେ ଯେତେ ଖେଳଣା ଅଣା ହୋଇଛି ବା ଜନ୍ମଦିନରେ ଯେତେ ଉପହାର ମିଳିଛି ସବୁଠାରୁ ଭଲ ଲାଗେ ତାକୁ ବଲ୍ । ସେଥିପାଇଁ ମିତା ଯେତେବେଳେ ବଜାର ଯାଆନ୍ତି ସବୁବେଳେ ବିଭିନ୍ନ ରଂଗର, ବିଭିନ୍ନ ଆକାରର ବଲ୍ ଆଣି ଦିଅନ୍ତି ମିଟୁପାଇଁ । ପ୍ରଥମେ ରବରବଲ, ବଡ ହେବାପରେ ଟେନିସ୍ ବଲ ଓ ଶେଷରେ କ୍ରିକେଟ ବଲ । ମିଟୁ ଶୋଇଲାବେଳେ ତା ମୁଣ୍ଡ ପାଖରେ ନିଶ୍ଚୟ ବଲ୍ଟିଏ ରଖିଥିବ । ଖାଇଲାବେଳେ ବାଁ ହାତରେ ଓ ପଢ଼ିଲା ବେଳେ ଟେବୁଲ ଉପରେ ବଲ୍ଟିଏ ରଖିବା ଥିଲା ତା ପାଇଁ ସ୍ୱାଭାବିକ୍ ।

ମିଟୁ ଏଇ ବଲ୍ ପାଇଁ କେତେ ଗାଳି ନ ଶୁଣିଛି ମିହିରଙ୍କ ଠାରୁ । ଥରେ ନଅ ଦଶ ବର୍ଷର ଥିଲାବେଳେ ବୈଠକ ଘରେ ବଲ୍ ଖେଳୁ ଖେଳୁ ଗୋଲ କାଚ ଟେବୁଲ୍‌ଟିକୁ ଭାଙ୍ଗି ଦେଇଥିଲା । ଆୱାଜ ଶୁଣି ମିତା ରୋଷେଇଘରୁ ଆସି ଦେଖିଲେ କାଚ ଭାଙ୍ଗି ଖଣ୍ଡ ଖଣ୍ଡ ହୋଇଯାଇଛି । କିନ୍ତୁ ମିଟୁର ପତ୍ତା ନାହିଁ । ମିହିରଙ୍କୁ ଡରି ଯାଇ ଛାତରେ ଲୁଚିଥିଲା । ବ୍ୟସ୍ତ ହୋଇ ବହୁତ ଖୋଜାଖୋଜି କଲା ପରେ ମିତା ତାକୁ ଠାବ କରିଥିଲେ । ସେ ଦିନ ମିହିର୍ ଅଫିସ୍‌ରୁ ଫେରି ଭଙ୍ଗା ଟେବୁଲ୍ ଦେଖି ମିଟୁକୁ ଡାକିଥିଲେ । ସେଦିନ ମିହିରଙ୍କ ସାମ୍ନାରେ ହାତ ପ୍ରସାରଣ କରି ଠିଆ ହୋଇ ମିତା ପୁଅକୁ ମାଡ଼ରୁ ବଞ୍ଚାଇଥିଲେ ଓ ମନ୍ତବ୍ୟ କରିଥିଲେ 'ଛୋଟ ପିଲାଥିବା ଘରେ କାଚ ଜିନିଷ ରଖିବା ଆମରି ଭୁଲ୍ । ଟେବୁଲ୍ ପାଇଁ କାହିଁକି ମନଦୁଃଖ କରୁଛ ? ଯଦି ଭଙ୍ଗା କାଚ ତା ଦେହରେ କେଉଁଠି ବାଜିଯାଇଥାନ୍ତା ?' ତା ପରେ ଟେବୁଲ୍‌ରେ ଆଉ ନୂଆ କାଚ ମିତା ପକାଇନଥିଲେ ଓ ଷ୍ଟାଣ୍ଡଟିକୁ ଟାଣି ଟାଣି ଗ୍ୟାରେଜରେ ରଖିଦେଇଥିଲେ ।

ଅଧିକାଂଶ ସମୟରେ ମିଟୁ ବଖରାରୁ ଠକ୍ ଠକ୍ ଆୱାଜ୍ ଆସୁଥିବ । କଅଣ ନା ବଲକୁ ଚଟାଣକୁ ଫିଙ୍ଗି, କାନ୍ଥକୁ ଫିଙ୍ଗି ଧରୁଥିବ । ସେଥିପାଇଁ ଘରର କାନ୍ଥସାରା ବଲର ଚିହ୍ନ । ଟିକିଏ ପଢ଼ିଲେ ଟିକିଏ ଖେଳିବ । ଦୁଇବର୍ଷ ଆଗେ ଏମିତି ଖେଳିବା ସମୟରେ ମିତାଙ୍କର ପ୍ରିୟ ଅଣ୍ଡାକୃତି ଦର୍ପଣଟି ଭାଙ୍ଗି ଦେଇଥିଲା । ଦାମୀ ଦର୍ପଣଟି ଦିଲ୍ଲୀରୁ ମଗା ହୋଇଥିଲା ।

ତଥାପି ପୁଅ ଉପରେ ରାଗିନଥିଲେ ମିତା । ସେଦିନ ବି ରକ୍ଷା କରିଥିଲେ ମିଟୁକୁ ମିହିରଙ୍କ ଠାରୁ । ଯୁକ୍ତି କରିଥିଲେ, 'ପୃଥିବୀରେ କେଉଁ ଜିନିଷ ସ୍ଥାୟୀ ମତେ ଟିକେ କହିଲ ? ମଣିଷ ରହୁନି ଆଉ ଛାର ଦର୍ପଣଟା ପାଇଁ ତାକୁ ଗାଳି ଦେଉଚ ? ତା ଛଡ଼ା ମିଟୁକୁ ଷୋଳବର୍ଷ ପୂରି ଗଲାଣି, ଆଉ କଣ ଶାସନ କରୁଚ ?' ସତେ ଯେମିତି ତା ଆଗରୁ ସିଏ ମିହିରଙ୍କୁ ଶାସନ କରିବାକୁ ଦେଉଥିଲେ । ସେ ଦିନ କିନ୍ତୁ ମିହିର ଖୁବ୍ ରାଗିଯାଇଥିଲେ ଓ ମିଟୁକୁ କହିଥିଲେ, 'ଆଜିଠାରୁ ତୋର ବଲ୍ ଖେଳ ବନ୍ଦ । ଘରର ଅଧା ଜିନିଷ ଭାଙ୍ଗିସାରିଲୁଣି ।' ତା'ର ଜବାବରେ ମିତା କହିଥିଲେ, 'ତୁମେ କେମିତି ସାଙ୍ଗ ମିଳିଗଲେ ବ୍ରିଜ୍ ଖେଳିବାକୁ ବସିଯାଉଛ ଅଧରାତି ଯାଏ । ତା ପାଇଁ ମୋ ମନ ଯଥେଷ୍ଟ ପରିମାଣରେ ଭାଙ୍ଗି ଯାଉଛି । ତୁମେ ବ୍ରିଜ୍ ଖେଳିବା ବନ୍ଦ କରିଦିଅ, ସିଏ ବଲ ଖେଳିବା ବନ୍ଦ କରିଦବ । ତା ପରେ ନା ମିହିରଙ୍କ ଖେଳ ବନ୍ଦ ହେଲା ନା ମିଟୁର ।

ହଷ୍ଟେଲ ଗଲାବେଳେ ମାକୁ ମିଟୁ କହିଯାଇଛି ତା ପୁରୁଣା ବଲ୍ ସବୁ ଠିକ୍‌ଭାବରେ ରଖିଥିବା ପାଇଁ । ସିଏ ଦଶହରା ଛୁଟିରେ ଆସିଲେ ଖେଳିବ । ମିଟୁ ପାଇଁ ବଲ୍ ଦୁଇ ଚାରିଟା ନେଇଗଲେ ସିଏ ନିଶ୍ଚୟ ଖୁସି ହେବ । ସମୟ ଦେଖିଲେ ମିତା-ସନ୍ଧ୍ୟା ପାଞ୍ଚଟା । ପାଖ ବଜାରରୁ ଯାଇ ମିଟୁ ପାଇଁ ଗୋଟେ ପିଙ୍ଗପଙ୍ଗ, ଗୋଟେ ଟେନିସ୍ ଓ ଗୋଟେ କ୍ରିକେଟ୍ ବଲ୍ କିଣି ଆଣିଲେ ମିତା । ମିହିର ଅଫିସ୍‌ରୁ ଫେରି ଟେବୁଲ୍ ଉପରେ ଥୁଆ ହେଇଥିବା ବଲ୍ ସବୁ ଦେଖି ପଚାରିଲେ-

ଏ ସବୁ କାହାର ?

ମୁଁ କିଣିଛି । ମିଟୁ ପାଇଁ ନେଇଯିବା । ସିଏ ଖେଳିବ, ଉତ୍ତର ଦେଲେ ମିତା ।

ତୁମ ପୁଅକୁ ହଷ୍ଟେଲରେ ଜଣିକିଆ ରୁମ୍ ମିଳିନି । ପୁଣି ତା ଉପରେ ର୍‌ୟାଗିଂ ଚାଲିଛି । ସିଏ କେତେବେଳେ ଓ କେଉଁଠି ଖେଳିବ ? ପ୍ରଶ୍ନ କରିଥିଲେ ମିହିର । କାହିଁକି, ଆମେ ଯେଉଁ ଦୁଇଦିନ ହୋଟେଲରେ ରହିବା ମିଟୁ ଆସି ଆମ ପାଖରେ ରହିବ । ସେଇଠି ବଲ୍ ଖେଳିବ ସିଏ, ସହଜ କଣ୍ଠରେ ଉତ୍ତର ଦେଇଥିଲେ ମିତା ।

ମିହିର ଏହାପରେ କଣ କହିବେ ଜାଣିପାରୁନଥିଲେ ।

❑❑❑

# କାହ୍ଣୁମୟ

ଜୁର୍ଦ୍ଦା ଷ୍ଟେସନ୍‌ରେ ଟ୍ରେନ୍ ଚଢ଼ି ଦୁଇଟିଯାକ ତଳ ବର୍ଥ ମିଳିଛି ଦେଖି ମିତା ଖୁସି ହୋଇଗଲା । ଯାହାହେଉ ସିଏ ଓ ମିହିର ଆରାମରେ ରାଉରକେଲା ଯିବେ । ମିହିରଙ୍କୁ ମଝି ବା ଉପର ବର୍ଥ ଜମା ଭଲ ଲାଗେନି । ସେମାନେ ଯିବା ଆସିବା କଲାବେଳେ ଯଦି ଗୋଟିଏ ତଳବର୍ଥ ମିଳେ, ତା ହେଲେ ସେଇଟା ମିହିରଙ୍କ ଭାଗରେ ପଡ଼େ । ସିଏ ବୃଝନ୍ତିନି ଶାଢ଼ୀ ପିନ୍ଧି ଉପର ତଳ ହେଲା ବେଳକୁ ମିତା କେତେ ହଇରାଣ ହୁଏ । ସେଥିପାଇଁ ସବୁବେଳେ ଟ୍ରେନ୍ ଟିକେଟ ହେଉ ହେଉ ମିତା ଦେଖିପକାଏ କେଉଁ ବର୍ଥ ମିଳିଛି । ଏଥର କେଜାଣି କେମିତି ଦେଖିବାକୁ ଭୁଲିଯାଇଥିଲା । ପୁଅ ମିଟୁକୁ ହଷ୍ଟେଲ୍‌ରେ ଛାଡ଼ିବା ଚିନ୍ତାରେ ଟିକେଟ୍ ଦେଖିବାକୁ ମନେ ନଥିଲା ।

ତିନିଦିନ ତଳେ ରାଉରକେଲାରୁ ବମ୍ବେ ଆସିବାବେଳେ ସାଙ୍ଗରେ ମିଟୁଥିଲା । ବର୍ଥ ମିଳିଥିଲା ଦୁଇଟି ତଳ ଓ ଗୋଟିଏ ମଝି । ମିତା ମନେ ମନେ ଭାବି ନେଇଥିଲା ତଳ ଦୁଇଟିରେ ମିତା ଓ ମିଟୁ ଶୋଇବେ ଓ ମଝିରେ ମିହିର । ତେଣୁ ମିତା ଗୋଟିଏ ତଳ ବର୍ଥ ଅକ୍ତିଆର କରିଥିଲା । ବାକି ତଳଟା ପାଇଁ ବାପା ପୁଅଙ୍କର ଚାଲିଲା ବାକ୍‌ଯୁଦ୍ଧ । ଶେଷରେ ଜବରଦସ୍ତି ମିହିର ସେଇ ବର୍ଥରେ ଶୋଇ ମିଟୁକୁ  ବାଧ୍ୟ କରିଥିଲେ ମଝି ବର୍ଥକୁ ଯିବା ପାଇଁ । ମିଟୁର ଶୁଖିଲା ମୁହଁ ଦେଖି ମିତା ଆଉ ସହିପାରି ନଥିଲା । ମଝି ବର୍ଥକୁ ଉଠିଯାଇ ପୁଅ ପାଇଁ ତଳବର୍ଥ ଛାଡ଼ି ଦେଇଥିଲା । ମିଟୁ ମନା କରିଥିଲା ମା'କୁ । କହିଥିଲା 'ମଝିରେ ଶୋଇଲେ ତୁମେ ହଇରାଣ ହେବ ଉପର ତଳହେଲା ବେଳକୁ' । ମିତା ତାର ମୁଣ୍ଡ ଆଉଁଷି ଦେଇ କହିଥିଲା 'ମୋର କିଛି କଷ୍ଟ ନାହିଁରେ ବାବା, ତୋର କଷ୍ଟ ହିଁ ମୋର କଷ୍ଟ । ତୁ ଆରାମରେ ଶୋଇଲେ ମୋର ଆରାମ ।' ମିତା ଭାବୁଥିଲା ଏବେ ମିଟୁ ହଷ୍ଟେଲ୍‌ରେ ରହିବ ଚାରିବର୍ଷ । କିଏ ତାର ସୁଖ ସୁବିଧା ଦେଖିବ ? କେତେ ବା ବୟସ ହୋଇଛି-ଏଇ ଗଲା ମାସରେ ସତର ପୂରି ଅଠର ପଶିଲା ।

ହାତ ଘଡ଼ିକୁ ଚାହିଁ ମିତା ଦେଖିଲା ଟ୍ରେନ୍ ଛାଡ଼ିବାକୁ ଆହୁରି ଅଧଘଣ୍ଟେ ବାକି ଅଛି । ଆହା ! ଏଇ ସମୟତକ ସେମାନେ ମିଟୁ ପାଖରେ ରହିପାରିଥା'ନ୍ତେ । ତତତର ହୋଇ ପଓ୍ୱାଇରୁ ଚାଲି ଆସିଲେ କାଳେ ବାଟରେ ଟ୍ରାଫିକ୍ ଜାମ୍ ହୋଇଯିବ ଓ ସେମାନେ ଠିକ୍

ସମୟରେ ଷ୍ଟେସନ୍‌ରେ ପହଞ୍ଚି ପାରିବେନି ବୋଲି । ମିତାର ମନଟା ବିଷାଦରେ ଭରିଗଲା ଓ ଆଖିରେ ଲୁହ ଢଳେଇ ଆସିଲା । ଡଲକୁ ନଇଁପଡି, ଆଟାଚି ଓ ବ୍ୟାଗକୁ ଜଂଜିରରେ ତାଲା ପକାଇବାବେଳେ ଆଖି ପୋଛି ପକାଇଲା ମିତା । ମିତା କାନ୍ଦୁଛି ଜାଣିଲେ ମିହିର ବିରକ୍ତ ହେବେ । ନିଜ ସିଟ୍‌ରେ ବସି ଚାରିଆଡ଼େ ଆଖି ବୁଲାଇ ଆଣିଲା ମିତା । ସାମନାରେ ମିହିର କୁଲିକୁ ଟଙ୍କା ଦେଇସାରି ପଛକୁ ଆଉଜି ବସିଛନ୍ତି । ସାଇଡ୍‌ର ଉପର ବାର୍ଥକୁ ଚାହିଁ ଚମକି ଉଠିଲା ସିଏ । ତାକୁ ଜଣାପଡ଼ିଲା ସତେ ଯେମିତି ମିଟୁ ବସିଛି । କେମିତି ହେଇଛି ସତରେ ଏ ପିଲାଟି ମିଟୁ ଭଳିଆ । ଭଲକରି ଚାହିଁଲା ତା ଆଡ଼େ । ମିଟୁଠାରୁ ଦୁଇ, ତିନି ବର୍ଷ ବଡ଼ ହେବ । ପିନ୍ଧିଛି ଗାଢ଼ ନୀଳ ରଂଗର ଜିନ୍ ପ୍ୟାଣ୍ଟ ଓ ରକ୍ତ ଗୋଲାପ ରଙ୍ଗର ଟି-ସାର୍ଟ । କାନରେ ୱାକ୍‌ମ୍ୟାନ ଲଗାଇ ଗୋଡ଼ ଲମ୍ବାଇ ଆଉଜି ବସିଛି ଓ ବହି ଗୋଟେ ଧରି ଧ୍ୟାନ ଦେଇ ପଢୁଛି । ମିଟୁ ବି ଠିକ୍ ଏମିତି ପଢ଼େ କାନରେ ୱାକମ୍ୟାନ୍ ଲଗାଇ । ଖାଇବାବେଳେ ଡାକି ଡାକି ଥକିଯାଏ ମିତା । ଶେଷରେ ପୁଅ ବଖରାର ଆଉଜା କବାଟକୁ ଠେଲି ସିଏ ହଲାଇ ଦିଏ ତାକୁ । ନିଜେ ହଲିଗଲା ମିତା । ଏବେ କ'ଣ କରୁଥିବ ମିଟୁ ?

ରାତିରେ ମେସ୍‌ରେ ପେଟ ପୂରାଇ ଖାଇଥିବ ତ ? ଶୋଇଲାବେଳେ ଅଲ୍ ଆଉଟ୍ ଲଗାଇବ ? ଭିତର ପଟୁ କବାଟ ବନ୍ଦ କରିବ ନା ନାହିଁ ? ମନରେ ଅଜସ୍ର ପ୍ରଶ୍ନ । ଆଜି ମିଟୁକୁ ଆଉଁଷି ଦେଇ ଟ୍ୟାକ୍‌ସିରେ ବସିଲାବେଳେ ତାକୁ ଲାଗୁଥିଲା ସତେ ଯେମିତି ତାର ପ୍ରାଣଟି ରହିଗଲା ମିଟୁ ପାଖରେ, ଖାଲି ଜଡ ଶରୀରଟା ଫେରି ଯାଉଛି ରାଉରକେଲା । ଅନେକ କଥା କହିବାକୁ ଇଚ୍ଛା ଥିଲେ ବି ଗୋଟେ ପଦ ଉଚ୍ଚାରଣ କରି ପାରିନଥିଲା କଣ୍ଠରୋଧ ଯୋଗୁ । ସମସ୍ତ ଭାଷା ସତେ ଯେମିତି ଲୁହ ହୋଇ ତା ଆଖିରୁ ଝରିପଡ଼ିଥିଲା । ଟ୍ୟାକ୍‌ସିର ପଛ କାଚ ପଟେ ମିଟୁର ମଳିନ ମୁହଁଟିକୁ ଦେଖୁଥିଲା ଅଦୃଶ୍ୟ ହୋଇଯିବା ଯାଏ । କାହାର କିଚିରି ମିଚିରି ପାଟିରେ ସମ୍ବିତ୍ ଫେରି ପାଇଲା ମିତା । ସାମ୍‌ନାରେ ତାର ସହଯାତ୍ରୀ ତିନିଜଣ । ମାଆଟିଏ । ସାଙ୍ଗରେ ବାର, ତେର ବର୍ଷର ଝିଅଟିଏ ଓ ଆଠ, ନଅ ବର୍ଷର ପୁଅଟିଏ ସେମାନଙ୍କୁ ଛାଡ଼ିବାପାଇଁ ଅନେକ ପୁରୁଷ ଓ ସ୍ତ୍ରୀ ଲୋକଙ୍କ ଭିଡ଼ । କଥାବାର୍ତ୍ତାରୁ ମିତା ଯାହା ଜାଣିଲା ପିଲା ଦୁହେଁ ଖରାଦିନ ଛୁଟିରେ ମା' ସାଙ୍ଗରେ ମାମୁ ଘରକୁ ବୁଲି ଆସିଥିଲେ । ଛୁଟି ସରିଲାରୁ ଫେରିଯାଉଛନ୍ତି ନିଜ ସହର କଲିକତାକୁ । ଟ୍ରେନ୍‌ରେ ଛାଡ଼ିଆସିଥିବା ଅଜା, ଆଇ, ମାମୁ ଓ ମାଉସୀମାନେ ସେଇ ପୁଅଟିକୁ କହିଲାଗିଥାଆନ୍ତି ବାଟରେ ତା'ର ମାଆକୁ ହଇରାଣ ନ କରିବା ପାଇଁ । ସମସ୍ତଙ୍କଠାରୁ ଦୃଷ୍ଟି ଫେରିଯାଇ ମିତାର ଦୃଷ୍ଟି ଅଟକି ଯାଇଥିଲା

ସେଇ ପୁଅଟି ଉପରେ, ଯାହାକୁ ସମସ୍ତେ ଡାକୁଥିଲେ ସୋନୁବୋଲି । ମିଟୁ ଏଇ ବୟସରେ ଦିଶୁଥିଲା ଅବିକଳ ଏମିତି, ଆଉ ଥିଲା ବି ଏମିତି ଚଞ୍ଚଳ । ଚାଲିଲା ଶଗଡରେ ହାତ ଦେଉଥିଲା । ବଡ଼ ହେଇ ସିନା ଶାନ୍ତ ହେଇଗଲା । ସୋନୁ ତା ମା' ଉପରେ ଲଦି ହେଉଛି । ସୋନୁ ମୁଣ୍ଡ ପଛପଟେ ଗହଳ ବୁଟି ଭିତରୁ ଦୁଇଟି ଭଉଁରୀ ଦିଶୁଛି ଭାଲୁର ଆଖିପରି । ମିଟୁର ମୁଣ୍ଡରେ ବି ଠିକ୍ ଏମିତି ଦୁଇଟି ଭଉଁରୀ । ମିଟୁ ଜନ୍ମ ହେଉ ହେଉ ତା ମୁଣ୍ଡରେ ଭଉଁରୀ ଦେଖି ବୋଉ କହିଥିଲା ପୁଅକୁ ପାଣି ପାଖକୁ କମାରୁ ଛାଡ଼ିବୁନି । ଆଉ ବୋଉ ସେଇ କଥାକୁ ଏବେଯାଏ ଅକ୍ଷରେ ଅକ୍ଷରେ ପାଳନ କରିଛି ମିତା । ସେଥିପାଇଁ କଟକ ମାମୁଘରକୁ ଗଲେ ମିଟୁକୁ ଗୋଡେ ଗୋଡେ ଜଗିଥାଏ ସିଏ । କାଳେ କେତେବେଳେ ତାଳଦଣ୍ଡା କେନାଲକୁ ଚାଲିଯିବ କାହା ସାଙ୍ଗରେ । ଘର ସାମ୍ନାରେ କେନାଲ ବୋଲି ତାର ଭାରି ଡର ପୁଅ ପାଇଁ । ସ୍କୁଲରେ ବି କେବେ ପିକ୍‌ନିକ୍ ଯିବାକୁ ଦେଇନି ତାକୁ । ମିତା ଜାଣେ ପିକ୍‌ନିକ୍ ମାନେ ଆଖପାଖରେ ନିଶ୍ଚୟ ନଦୀ ବା ଡ୍ୟାମ୍ ଥିବ । ତେଣୁ ସେଇ ପିକ୍‌ନିକ୍ ପାଇଁ ଘରେ ମିଟୁର କେତେ ରାଗ, ରୁଷା, ହେଲେ ବି ତାକୁ ଥରଟିଏ ପାଇଁ ଛାଡ଼ିନି ମିତା । ଏବେ ବି ବାରମ୍ବାର ତାକୁ କହିକି ଆସିଛି, ବାବାରେ, ପାଣି ପାଖକୁ ଯିବୁନି, ପହଁରା ଜାଣିନୁ । ଏଠି କୁଆଡ଼େ ପଓ୍ୱାଇ ହ୍ରଦରେ ପିଲାମାନେ ବୋଟିଂ କରନ୍ତି । ପହଁରା ଶିଖିଥିଲେ କେତେ ଭଲ ହୋଇଥାନ୍ତା । ରାଉରକେଲାରେ ତାର ସାଙ୍ଗମାନେ ଜର୍ମାନ୍ କ୍ଲବ ପାଇଁ ପହଁରା ଶିଖିଥିଲେ । ମିଟୁକୁ କିନ୍ତୁ ସିଏ ଛାଡ଼ି ନଥିଲା ।

ଟ୍ରେନ୍ ଛାଡ଼ିବା ଆରମ୍ଭ କଲା । ସୋନୁ ପ୍ରଭୃତିଙ୍କୁ ଛାଡ଼ି ଆସିଥିବା ଆତ୍ମୀୟମାନେ ଜଣ ଜଣ କରି ଓହ୍ଲାଇ ଯାଇଥିଲେ । ସୋନୁର ମା' ପିଲା ଦୁଇଜଣଙ୍କୁ ବସାଇ ସାଂଗରେ ଆଣିଥିବା ଖାଇବା ଜିନିଷ ପେପର ପ୍ଲେଟରେ ବାଢ଼ୁ ବାଢ଼ୁ କହିଲେ, ମିତା ପଟର ଉପର ବର୍ଥରେ ଝିଅ ଓ ମଝି ବର୍ଥରେ ସୋନୁ ଶୋଇବ । ମିତା ହାଇ ମାରିଲା । ଆଜି ଶୁକ୍ରବାର ହୋଇଥିବାରୁ ତାର ଖାଇବାର ସମସ୍ୟା ନାହିଁ । ଆଜି ଦିନସାରା ମିଟୁର ଜିନିଷ କିଣା ଓ ତାର ହଷ୍ଟେଲ୍ ରୁମ୍ ଧୂଆ, ସଜଡାରେ ଖୁବ୍ କ୍ଲାନ୍ତ ହୋଇ ପଡ଼ିଛି ସିଏ । ମିହିର ନିଜ ପାଇଁ ଡିନର୍ ଅର୍ଡର କରିସାରିଲେଣି । ରେଳ କର୍ମଚାରୀ ଆଣି ସମସ୍ତଙ୍କୁ ତକିଆ, ଚାଦର, କମ୍ବଳ ଆଦି ଦେଇଗଲାଣି । ମିତା ଚଦର ପକାଇ ଶୋଇବାର ଯୋଗାଡରେ ଲାଗିଲା । ପୁଅ କଥା ଭାବୁ ଭାବୁ କେତେବେଳେ ଆଖି ଲାଗିଯାଇଛି ସିଏ ଜାଣିପାରିନି ।

ହଠାତ୍ କୋଳାହଳରେ ମିତାର ଛାଇ ନିଦ ଭାଙ୍ଗିଲା । ଟ୍ରେନ୍ କେଉଁ ଷ୍ଟେସନ୍‌ରେ ଅଟକିଛି ? ହାତ ଘଡିକୁ ଚାହିଁ ଦେଖିଲା ସାଢ଼େ ନ'ଟା ବାଜିଲାଣି । ଏ ଭିତରେ ଯେ ଘଣ୍ଟାଏ ପାର ହୋଇଗଲାଣି ସିଏ ଜାଣିପାରିନି । ଟ୍ରେନ୍ ଚାଲିବାକୁ ଆରମ୍ଭ କଲା । ବୋଧହୁଏ କଲ୍ୟାଣ ଷ୍ଟେସନ୍‌ରେ ଅଟକିଥିଲା ଟ୍ରେନ୍ । ମିତା ଦେଖିଲା ମିହିର ପେଟେଭ ଶୋଇ ମାଗାଜିନ୍ ପଢ଼ିବାରେ ଲାଗିଛନ୍ତି । ତାଙ୍କ ଗୋଡ ତଳକୁ ଯିବା ଆସିବା ରାସ୍ତାରେ ଠିଆ ହୋଇଛନ୍ତି ନୂଆ ନୂଆ ବାପା-ମା ହୋଇଥିବା ପତିପତ୍ନୀ ଦୁଇଜଣ । ଝିଅଟି ଶିଶୁଟିକୁ ଡାହାଣ ହାତରେ ନିଜ ଛାତି ପାଖରେ ଜଡ଼ାଇ ଧରିଛି ଓ ବାଁ ହାତରେ ଟ୍ରେନ୍ ରେଲିଂକୁ ଧରିଛି । ସେମାନଙ୍କ ଗୋଡ଼ ପାଖରେ ଯିବା ଆସିବା ରାସ୍ତାରେ ଗଦା ହୋଇଛି ସେମାନଙ୍କ ଲଗେଜ୍-ସୁଟ୍‌କେଶ, ଏଆର ବ୍ୟାଗ୍, କୁଲକେର୍, ଫ୍ଲାସ୍, କ୍ୟାରିବ୍ୟାଗ୍ ଇତ୍ୟାଦି । ସେମାନଙ୍କର କଥାବାର୍ତ୍ତାରୁ ଜାଣିଲା ଯେ ସାମନାର ଉପର ଓ ମଝି ବର୍ଥ ସେ ଦୁଇଜଣଙ୍କୁ ମିଳିଛି । ସେମାନେ ଖୁବ୍ ଚିନ୍ତିତ ଦିଶୁଥିଲେ । ସେତେବେଳ କମ୍ପାଟ୍‌ମେଣ୍ଟର ଅଧିକାଂଶ ଲୋକ ଶୋଇପଡ଼ିଲେଣି ଓ ଯେଉଁମାନେ ଶୋଇନାହାନ୍ତି ସେମାନେ ଶୋଇବାର ଆୟୋଜନରେ ବ୍ୟସ୍ତ । ଅନ୍ୟ ଉପାୟ ନଦେଖି ତରୁଣ ବାପାଟି ମିହିରଙ୍କୁ ଅନୁରୋଧ କଲା ତାଙ୍କ ବର୍ଥଟି ତା'ର ସ୍ତ୍ରୀ ଓ ଶିଶୁଟି ପାଇଁ ଛାଡ଼ିଦେବାକୁ । ମିହିର କିନ୍ତୁ ଚିରାଚରିତ ଭାବରେ ଉପର ବର୍ଥକୁ ଯିବାପାଇଁ ଅସୁବିଧା ଅଛି କହି ବହି ପଢ଼ାରେ ମନ ଦେଲେ । ମିତାର ନିଦ ଛାଡ଼ିଆସିଥିଲା । ଶିଶୁଟିର ଝୁଲିପଡ଼ିଥିବା ପାଦ ଦୁଇଟି ଉପରେ ତା'ର ନଜର ପଡ଼ିଲା । ମିଟୁ କୁନିଟେ ଥିଲାବେଳେ ବିଲ୍‌କୁଲ୍ ତା ପାଦ ଦୁଇଟି ଦିଶୁଥିଲା ଗୋଲାପ ପାଖୁଡ଼ା ଭଳି ରଂଗ । ଆଉ ସେଥିପାଇଁ ମିତା ସବୁବେଳେ ଦୁଇ ହାତରେ ତା ଦୁଇପାଦକୁ ଧରି ନିଜ ଗାଲରେ ଘଷୁଥିଲା-କେତେ କଅଁଳିଆ ଥିଲା ସେଇ ପାଦ । ଠିକ୍ ଲହୁଣୀ ଭଳି ।

କାଲି ପରି ଲାଗୁଛି, ମିଟୁକୁ ତିନିମାସ ହେଲାବେଳେ ସିଏ ଷ୍ଟିଲ୍ ପ୍ଲାଣ୍ଟ୍‌ରେ ମେଡ଼ିକାଲ ଅଫିସର ଭାବେ ଯୋଗଦେଇଥିଲା । ସେତେବେଳେ ଚାକିରିର ପ୍ରଥମ, ଦୁଇ, ତିନି ବର୍ଷ ମାଇନ୍ସରେ ରହିବାକୁ ପଡୁଥିଲା । ମିହିର ଓ ଶାଶୁଙ୍କ ପାଖେ ମିଟୁକୁ ଛାଡ଼ି ସିଏ ଟେନ୍‌ସା ଯାଇଥିଲା । ଟେନ୍‌ସା ଥିଲା ରାଉରକେଲାରୁ ପ୍ରାୟ ଶହେ କିଲୋମିଟର ଦୂରରେ । ଠିକ୍ ଦୁଇଦିନ ପରେ ମିହିର ଫୋନ୍ କରିଥିଲେ ମିଟୁକୁ ଭୀଷଣ ଜ୍ୱର । ଫୋନ୍ ପାଇଲା ବେଳକୁ ଆଉ କୌଣସି ବସ୍ ନଥିଲା ରାଉରକେଲା ଆସିବାକୁ । ମିତା ବାୟାଣୀ ପରି କାନ୍ଦି କାନ୍ଦି ନଡା ଟ୍ରକରେ ଚଢି ଚାଲିଆସିଥିଲା ରାଉରକେଲା, କ୍ଲିନର ପାଖରେ ବସି । ମିତା

ପହଞ୍ଚିବା ପରେ ମିଟୁର ଜ୍ୱର ଆପେ ଆପେ କମିଯାଇଥିଲା । ସମସ୍ତେ କହୁଥିଲେ ମାଆକୁ ଝୁରିହୋଇ ଜ୍ୱର ହୋଇଥିଲା । ତା' ପରେ ଅବଶ୍ୟ ତାଙ୍କର ପିଲାଟିଏ ଯୋଗାଡ଼ କରି ମିଟୁକୁ ଟେନ୍‌ସା ନେଇଯାଇଥିଲା ମିତା । ଯା ଭିତରେ ଏତେ ଗୁଡ଼ାଏ ବର୍ଷ ବିତିଗଲାଣି ।

ତରୁଣ ସ୍ୱାମୀଟି ଫେରି ଆସିଥିଲା କୌଣସି ତଳବର୍ଥ ଯୋଗାଡ଼ କରି ନପାରି । ପତିପତ୍ନୀ ଦୁହେଁ ଖୁବ୍ ଚିନ୍ତାରେ ପଡିଯାଇଥିଲେ । ଠିକ୍ ଏତିକିବେଳେ ଶିଶୁଟି କାନ୍ଦିବା ଆରମ୍ଭ କରିଦେଇଥିଲା । ତାକୁ ଭୋକ ଲାଗୁଥିଲା ନା ତାର ମା' ତାକୁ ଠିକ୍‌ରେ ଧରି ପାରୁନଥିଲା ? ମିତା ଆଉ ଧୈର୍ଯ୍ୟ ଧରି ରହି ପାରିନଥିଲା । ଉଠିପଡ଼ି ସେଇ ତରୁଣୀଟି ଲକ୍ଷ୍ୟ କରି କହିଲା, ପିଲାକୁ ଧରି ତୁମେ ଏଠି ଶୁଅ । ମୁଁ ସେପଟ ମଝିକୁ ଯାଉଛି । ଏତକି କହି ନିଜର ତକିଆ, ଚାଦର, କମ୍ବଳ ଆଦି ଉଠାଇ ଆଣି ମିହିରଙ୍କ ପଟର ମଝି ବର୍ଥରେ ରଖିଲା । ସ୍ୱାମୀ, ସ୍ତ୍ରୀ ଦୁଇଜଣ ପ୍ରଥମେ ଅବାକ୍ ହୋଇଗଲେ ଓ ପରେ କୃତଜ୍ଞତା ଜଣାଇଲେ । ମିହିର କାବା ହୋଇ ମିତାକୁ ଚାହିଁଥିଲେ-ଆଖିରେ ପ୍ରଶ୍ନ, ସତେ ଯେମିତି ପଚାରୁଥିଲେ, ଅଜଣା, ଅଚିହ୍ନା ଲୋକପାଇଁ କାହିଁକି ନିଜେ ହଇରାଣ ହେଉଛ ?

ମଝି ବର୍ଥରେ ଶୋଇ ଶୋଇ ମିତା ଦେଖୁଥିଲା ସାମ୍ନାର ତଳ ବର୍ଥରେ ସେଇ କୁନି ଶିଶୁଟିକୁ ଧରି ତାର ମା' ଶୋଇଛି । ସେଇ ଶିଶୁଟି ପୁଅ କି ଝିଅ ମିତା ଜାଣେନି । ସାମନା ମଝିରେ ଶୋଇଛି ସୋନୁ ଓ ତଳ ପାଖର ଉପରେ ବର୍ଥରେ ସେଇ ଲାଲ ଟି-ସାର୍ଟ ପିନ୍ଧା ପିଲାଟି । ମିତାକୁ ଲାଗୁଥିଲା ସତେ ଯେମିତି ମିଟୁ ହଷ୍ଟେଲ୍‌ରେ ନାହିଁ । ଅଛି ତାରି ପାଖରେ - ବିଭିନ୍ନ ରୂପରେ ।



# ବାହୁଡ଼ା

ମିତାର ନିଦ ଆଜି ଭୋର ଚାରିଟାରୁ ଭାଙ୍ଗିଗଲା । ତିନିମାସ ତଳେ ବମ୍ବେ ଆଇ.ଆଇ.ଟି.ର ହଷ୍ଟେଲରେ ମିତା ଓ ମିହିର ଛାଡି ଆସିଥିବା ପୁଅ ମିଟୁ ଆଜି ଘରକୁ ଫେରୁଛି ଗୀତାଞ୍ଜଳିରେ । ସକାଳ ସାଢ଼େ ସାତଟାରେ ଟ୍ରେନ ପହଞ୍ଚିବ ରାଉରକେଲା । ଆଜି ରବିବାର ଥିବାରୁ ମିହିର ଓ ମିତା ଦୁଇଜଣଙ୍କର ଛୁଟି । କାଲିଠାରୁ ମିତା ଛଅଦିନ ଛୁଟି ନେଇଛି ମିଟୁ ଘରେ ରହିବାଯାଏ । ଆସନ୍ତା ଶନିବାର ରାତିରେ ମିଟୁ ଫେରିଯିବ ବମ୍ବେ, ସେଇ ଗୀତାଞ୍ଜଳିରେ । ମିଡ୍ ସେମ୍ ପରେ କ୍ଲାସ୍ ମିସ୍ କରି ଘରକୁ ଆସୁଛି ମିଟୁ । ଆଗରୁ କିଛି ନକହି ହଠାତ୍ ଗଲା ରବିବାର ଦିନ ଫୋନ୍ କରି ମା'କୁ କହିଥିଲା ଏଇ ରବିବାର ଘରେ ପହଞ୍ଚିବ ବୋଲି । ମିଟୁ ଆସିବା ଜାଣି ମିତାର ବେଶ୍ ଚିନ୍ତା ହୋଇଥିଲା ଓ ପୁଅକୁ ପଚାରିଥିଲା ଅଜସ୍ର ପ୍ରଶ୍ନ-ଆସିଲାବେଳେ ଆଉ କିଏ ସାଂଗରେ ଆସୁଛି ନା ନାହିଁ ? ଫେରିବା ବେଳର ଟିକେଟ ହେଉଛି ନା ନାହିଁ ? କୋଚ୍ ନମ୍ବର ଓ ବର୍ଥ ନମ୍ବର କେତେ ? ଭିଟି ଯାଏ କେମିତି ଯିବ ? ସବୁ ପ୍ରଶ୍ନର ଉତ୍ତର ଦେଇନପାରି ପୁଅ କହିଥିଲା ଇ-ମେଲ୍‌ରେ ସବୁ ଲେଖି ଜଣାଇବ ଓ ଇ ମେଲ୍ ପଠାଇଥିଲା ମଧ୍ୟ । ଜଣାଇଥିଲା ସାଙ୍ଗରେ ସୌରଭ ଆସୁଛି । ରାଉରକେଲାରେ ଓହ୍ଲାଇ ସିଏ ଗୁମ୍‌ଲା ଯିବ । ଫେରିବା ଟିକେଟ୍ ମଧ ହୋଇଯାଇଛି । ଆସିବା ବେଳର କୋଚ୍ ନମ୍ବର ଚାରି ଓ ଫେରିବା ବେଳର ନମ୍ବର ଏକ । ଭିଟି ଯାଏ ଲୋକାଲ୍ ଟ୍ରେନ୍‌ରେ ଯିବ । ମଝିରେ ପରୀକ୍ଷା ଥିବାରୁ ମିତାକୁ ଫୋନ୍ ନ କରିବା ପାଇଁ ଲେଖିଥିଲା । ଚିଠି ପଢ଼ି ହସିଥିଲେ ମିତା । ଗଲାବେଳର କୋଚ୍ ନମ୍ବର ଲେଖିବା କ'ଣ ଦରକାର ଥିଲା ? ଅଥଚ୍ ଆସିଲାବେଳର ବର୍ଥ ନମ୍ବର ପୁଅ ଲେଖିନଥିଲା ।

ମିଟୁର ମେଲ୍ ପାଇ ମିତା ମଧ୍ୟ ମେଲ୍ କରିଥିଲେ ତା ପାଖକୁ । ଆସିଲାବେଳେ ହୁସିଆର ରହିବାକୁ । କହିଥିଲେ ବାଟରେ କିଏ କ'ଣ ଦେଲେ ନ ଖାଇବା ପାଇଁ । ସାବଧାନ କରିଥିଲେ ଜିନିଷପତ୍ର ଜଂଜିରରେ ତାଲା ଦେଇ ଯେମିତି ରଖେ । ଲେଖିଥିଲେ ଶୁକ୍ରବାର ପରୀକ୍ଷା ସରିଲା ପରେ ଘରକୁ ଫୋନ୍ କରିବା ପାଇଁ ଓ ଆସିଲାବେଳେ ମଇଳା ଲୁଗାପଟା ନେଇ ଆସିବା ପାଇଁ । ଶୁକ୍ରବାର ଦିନ ବହୁତ ଅପେକ୍ଷା କଲେ ମିତା ଫୋନ୍ ପାଇଁ । ମିଟୁ ଫୋନ୍ କଲାନି । ମିତା ତାର ମୋବାଇଲ୍‌କୁ ଫୋନ୍ କଲେ ଯେ କେବଳ ରିଂ ହେଲା, କେହି କିନ୍ତୁ ଉଠାଇଲେନି । ବୋଧହୁଏ ମିଟୁ ବ୍ୟସ୍ତ ରହି ଫୋନ୍ କରିପାରିନି । କାଲି ଭୋର ଛଅଟାରୁ ମିଟୁ ଓ ତା' ସାଂଗ ଗୀତାଞ୍ଜଳିରେ ଚଢ଼ିଥିବେ ଭିଟିରୁ ।

ତରତର ହୋଇ ଗାଧୁଆ ଘରେ ପଶିଲା ମିତା । ତାକୁ ଶୀଘ୍ର ନିତ୍ୟକର୍ମ ସାରିବାକୁ ପଡ଼ିବ । ପୁଣି ଘରଦ୍ୱାରା ସଫା ସୁତୁରା କରି ଠାକୁର ପୂଜା ବି ସାରିବାକୁ ପଡ଼ିବ । ଆଜି ତ ରବିବାର । ଷ୍ଟେସନରୁ ଫେରି ଠାକୁର ପୂଜା କରିଥିଲେ ବି ହୋଇଥାଆନ୍ତା । କିନ୍ତୁ ଠାକୁର ପୂଜା ନକରି ଘରୁ ବାହାରିଲେ ମିତାକୁ ଅଶୁଭ ଲାଗେ । ନିଜ କାମ ସାରୁ ସାରୁ ପାଞ୍ଚଟା ହେଇଗଲା । ସିଏ ମିହିରଙ୍କୁ ହଲେଇ ଉଠାଇଲା । ଶୀଘ୍ର କାମ ସାରିଲେ ମିଟୁକୁ ଆଣିବାକୁ ଷ୍ଟେସନ ଯିବାକୁ ହେବ । ମିହିର ନିଦରୁ ଉଠି ଲାଇଟ ଲଗାଇ କାନ୍ଥ ଘଣ୍ଟାକୁ ଦେଖି ବିରକ୍ତ ହେଲେ ଓ କହିଲେ 'ରବିବାର ଦିନଟାରେ ବି ଟିକେ ଶୁଆଇ ଦେଉନା ।' ଛ'ଟାରେ ତାଙ୍କୁ ଉଠାଇବାକୁ କହି ଲାଇଟ୍ ଲିଭାଇ ପୁଣି ଶୋଇପଡ଼ିଲେ ମିହିର । ମିତା ଜାଣିଲା ମିହିର ନ ଗାଧୋଇ ମିଟୁକୁ ଆଣିବାକୁ ଯିବେ । ଫୁଲ ତୋଳିବାକୁ ବଗିଚାକୁ ଗଲା ମିତା । ଏବେ ଯାଏ ଆହୁରି ରାତି ପାହିନି, ଅନ୍ଧାର ଟିକେ ଟିକେ ଅଛି । ଫୁଲ ଏବେଠାରୁ ନ ତୋଳିଲେ ତାର କାମ ସରିବନି । ଘରୁ ସାତଟାରୁ ବାହାରିବାକୁ ପଡ଼ିବ । ପୁଣି ଜଳଖିଆ ପାଇଁ ସବୁଜିନିଷ ସଜାଡ଼ି କି ଯିବାକୁ ପଡ଼ିବ । ମିଟୁ ଦୋସା ଭଲପାଏ ବୋଲି କାଲିଠାରୁ ବିରି ଚାଉଳ ବାଟିକି ରଖିଛି ମିତା । ସମ୍ବର ତିଆରି କରି ଓଟିଜିରେ ରଖିଦେଇ ଯିବ, ତାହେଲେ ମିଟୁକୁ ଗରମ ଦୋସା ସମ୍ବର ଖାଇବାକୁ ଦେଇପାରିବ ।

ବଗିଚାକୁ ଯାଇ ମିତା ଦେଖିଲା ସବୁ ମନ୍ଦାର ଗଛରେ କଢ଼ି ଭର୍ତ୍ତି ହୋଇ ରହିଛି, ଏବେଯାଏ ଆହୁରି ଫୁଟିନି । ସବୁଦିନେ ତ ଏତେ କଢ଼ି ଗଛରେ ନଥାଏ, ଆଜି କେମିତି ଏତେ କଢ଼ି ? ଗଛମାନେ ବି କ'ଣ ତାହେଲେ ତାରି ପରି ମିଟୁକୁ ଝୁରି ହେଉଥିଲେ ଆଉ ସେଥିପାଇଁ କମ୍ ଫୁଲ ଫୁଟିଥିଲା ? ଆଉ ଆଜି ମିଟୁ ଆସିବ ବୋଲି କଅଣ ଖୁସି ହୋଇ ଗଛମାନେ କଢ଼ିରେ ଭରିଯାଇଛନ୍ତି । ମିତା ହଠାତ୍ ପାଗଳ ପରି ଚୁପ୍‌ଚୁପ୍ କରି ଗଛକୁ ପଚାରିଲା, ଆରେ, ତୁମେମାନେ ବି ଜାଣିଯାଇଛ ମୋ ପୁଅ ଆଜି ଆସୁଛି ବୋଲି ? ଗଛର ପତ୍ରସବୁ ପବନରେ ହଲିଲେ । ମିତାକୁ ଲାଗିଲା ସତେ ଯେମିତି ଗଛମାନେ ମୁଣ୍ଡ ହଲେଇ କହୁଛନ୍ତି, 'ହଁ ଆମେ ଜାଣିଛୁ ତୁମ ଧନ ଆଜି ତୁମ କୋଳକୁ ଫେରୁଛି ।' ଲୁହରେ ଜକେଇ ଆସିଲା ତାର ଆଖି ।

ଠାକୁର ଘର ଓଳା, ପୋଛା, ଚନ୍ଦନ ଘୋରା, ଫୁଲ ଦେବା, ପୂଜା ଆଦି ସାରିଲାବେଳକୁ ଛଅଟା ବାଜିଲାଣି । ତାଲା ଖୋଲି ମିଟୁ ବଖରାରେ ପଶିଲା ମିତା । ଘର ଭିତରେ ମିଟୁର ବାସ୍ନା । ମିଟୁ ଗଲାଦିନଠାରୁ ସେଇ ବଖରାକୁ ତାଲା ପକାଇ ରଖିଛି ମିତା । ମିଟୁ ରୁମ୍‌ରେ କିଏ ପଶିଲେ, ତାର ଖଟରେ କିଏ ଶୋଇଲେ ଅବା ତା ଗାଧୁଆଘର କିଏ

ବ୍ୟବହାର କଲେ ମିତାକୁ ଭଲ ଲାଗେନି । ସେଥିପାଇଁ ବଖରାଟି ସିଏ ତାଲା ପକାଇ ରଖିଛି । ପ୍ରତି ରବିବାର ଦିନ ନିଜେ ସେ ବଖରା ସଫା କରେ ଓ ପୁଣି ବନ୍ଦ କରି ରଖେ । ମିଟୁ ବଖରାର ଝରକା ଖୋଲିଲା ମିତା । ଅନାଇଲା ମିଟୁ ବଖରାର କାନ୍ଥକୁ । କାନ୍ଥ ସାରା ପେନ୍‌ସିଲରେ କ'ଣ ସବୁ ପାଠ ଲେଖିଛି ମିଟୁ । ବୋଧହୁଏ ମନେ ନରହୁଥିବା ପାଠ ସବୁ । ବମ୍ବେ ଗଲାବେଳେ କହିକି ଯାଇଥିଲା ତା ଉପରେ ଡିସ୍‌ଟେମ୍ପର ନ କରିବାକୁ । କାହିଁକି ନା ସିଏ ଜାଣିଥିଲା ମିତା ଖୁବ୍ ସଫାସୁତୁରା । ତେଣୁ ମିଟୁ ଯାଉ ଯାଉ ମିତା ଅପରିଷ୍କାର ହେଉଛି କହି ରଂଗ ଚଢ଼େଇ ଦେବ । ସତରେ ମିଟୁ ନ କହିଥିଲେ ଏତେବେଳକୁ ସିଏ ଡିସ୍‌ଟେମ୍ପର ମାରି ସାରନ୍ତାଣି । ଘରକୁ ଆସିଲାବେଳେ କାନ୍ଥରେ ସେ ଲେଖା ନଥିଲେ ତାକୁ କୁଆଡ଼େ ଆଉ କାହାର ରୁମ୍ ଭଳିଆ ଲାଗିବ, ସେଥିପାଇଁ ମିଟୁ ମନାକରି ଯାଇଥିଲା । ମିଟୁ ଆସିବା ଜାଣି ମିତା ତାର କମ୍ପୁଟର, ଟୁ-ଇନ୍ ୱାନ୍, ସିଡି କ୍ୟାସେଟ୍, ସବୁ ପୋଛା ପୋଛି କରି ସଫା କରି ରଖିଛି । ଗଲାବେଳେ ଛାଡ଼ି ଯାଇଥିବା ସାର୍ଟ, ପ୍ୟାଣ୍ଟ, ଗଂଜି ସବୁ ସଫା କରି ଆଲମିରାରେ ରଖିଦେଇଛି । ସେଘରର ଛୋଟ ପର୍ଦ୍ଦା, ବଡ଼ ପର୍ଦ୍ଦା ସବୁ ସଫା କରି ଟଙ୍ଗାଇଛି । ତରତରରେ ମିତା ବିଛଣା ଉପରେ ବାସି ବେଡ୍‌ସିଟ୍ ପକାଇଲା ଓ ଗାଧୁଆ ଘରେ ସଫା ତଉଲିଆ ଟାଙ୍ଗିଲା । ତା ପରେ ପ୍ରେସର କୁକୁରରେ ସମ୍ବର ବସାଇ ଏବଂ ଅନ୍ୟପଟେ ଚା' ବସାଇ ଯାଇ ମିହିରଙ୍କୁ ଉଠାଇଲା । ଗାରୁ ଗାରୁ ହୋଇ ମିହିର ଉଠିଲେ ।

ସାତଟା ବାଜିବାକୁ ପନ୍ଦର ମିନିଟ୍ ବାକି ଅଛି । ମିତା ପୂରାପୂରି ଲୁଗାପିନ୍ଧି ତିଆର୍ । ମିହିର ଷ୍ଟେସନକୁ ଫୋନ୍ କଲେ ଟ୍ରେନ୍ ଠିକ୍ ସମୟରେ ଆସୁଛି କି ନାହିଁ ? ତା ପରେ ମିତା ଉପରେ ବିରକ୍ତ ହୋଇ କହିଲେ, ଟ୍ରେନ୍ ଘଣ୍ଟାଟେ ଲେଟ୍ ଅଛି । ସାଢ଼େ ଆଠଟାର ରାଉରକେଲାରେ ପହଞ୍ଚିବ । ମିତା ଆଜି ତାଙ୍କର ରବିବାରଟା ମାଟି କରିଦେଲା କହି ମିହିର ରାଗିଉଠିଲେ ।

ମିତା ଆଶ୍ଚର୍ଯ୍ୟ ହେଉଥିଲା । ପୁଅ ଆସିବ ବୋଲି ଟିକିଏ ସକାଳୁ ଉଠିପଡ଼ିଲେ ଯେ କେତେ ବିରକ୍ତ ହେଉଛନ୍ତି ମିହିର । ଅଥଚ ଗତ ଦୁଇରାତି ମିତା ଶୋଇନି । ଶୁକ୍ରବାର ରାତି ମିଟୁର ଫୋନ୍‌କୁ ଅପେକ୍ଷା କରି ଓ ଶନିବାର ରାତି କେମିତି ସିଏ ଆସି ଭଲରେ ପହଞ୍ଚିବ ବୋଲି ଚିନ୍ତା କରିକରି । ସବୁ ବାପାମାନେ ଏମିତି ସ୍ୱାର୍ଥପର ନା କେବଳ ମିହିର ? ସକାଳେ ସମୟ ହେବନି ବୋଲି କାଲି ରାତିରେ ଯେତେବେଳେ ୱାସିଂ ମେସିନ୍‌ରେ ପାଣି ପୂରାଉଥିଲା ମିତା ସେତେବେଳେ ମିହିର ପଚାରିଥିଲେ, ଆଜି ତ ଲୁଗା କଚା ହୋଇଥିଲା । ପୁଣି ଦୁଇ ଦିନ

ପରେ ଯାଇ କଟା ହେବ । ପାଣି କ'ଣ ପାଇଁ ପୂରା ହେଉଛି ? ତା ପୁଣି ରାତିରେ । ଉତ୍ତରରେ ମିତା କହିଥିଲା ମିଟୁ ହଷ୍ଟେଲରୁ ତାର ମଇଳା ଲୁଗାପଟା ଆଣିଥିବ । ସକାଳେ ପାଣି ପୂରାଇବାକୁ ସମୟ ହେବନି । ସିଏ ଆସୁ ଆସୁ ତାର ଲୁଗା କଟା ହେବ । ତେଣୁ ଏବେଠାରୁ ପାଣି ପୂରାଉଛି ମିତା । ହୋ ହୋ ହୋଇ ବଡ଼ ପାଟିରେ ହସିଥିଲେ ମିହିର । ଏଇଥିପାଇଁ ମିହିରଙ୍କୁ କିଛି କଥା କହିବାକୁ ଇଚ୍ଛା କରେନି ସିଏ । ମିଟୁ ଲେଖିଥିଲା କମ୍ପ୍ୟୁଟର ସେଣ୍ଟରରେ ତାର ଚପଲ୍ ବଦଳି ହୋଇଯାଇଛି । ତାର ନୂଆ ଚପଲ ବଦଳରେ ତାକୁ ପୁରୁଣା ଚପଲ ହଳେ ମିଳିଛି । ମିତା ଏକଥା ପଢ଼ି ମିଟୁପାଇଁ ହଳେ ଚପଲ ବି କିଣିକି ରଖିଛି । ମିଟୁ ଏଠୁ ଯିବାର ଦଶଦିନ ପରେ କୁମାର ପୂର୍ଣ୍ଣିମା ପଡ଼ିବ ବୋଲି ସାର୍ଟଟିଏ କିଣିକି ବି ରଖିଛି । କିଣା ପ୍ୟାଣ୍ଟ ସିଏ ପିନ୍ଧିବାକୁ ଭଲ ପାଏନି ବୋଲି ପ୍ୟାଣ୍ଟ କନା ଆଣି ରଖିଛି ଓ ଦର୍ଜିକୁ କହିଛି ଆଜି ସଂଧ୍ୟାରେ ଆସି ମାପ ନେଇଯିବାପାଇଁ । ତା ହେଲେ ମିଟୁଯିବା ଆଗରୁ ପ୍ୟାଣ୍ଟଟି ଦେଇପାରିବ । ଆଉ ଦୁଇହଳ ଅଣ୍ଡର ଗାର୍ମେଣ୍ଟ ମଧ୍ୟ କିଣି ଆଣିଛି । ମିତା ଜାଣିଛି ମିଟୁ ଏ ଭିତରେ କିଛି ହଜାଇ ସାରିବଣି । ଏସବୁ ସିଏ ମିହିରଙ୍କୁ କିଛି ଜଣାଇ ନାହିଁ । ମିଟୁର ମଟର ସାଇକେଲ୍‌ଟା ଟିକେ ସଜାଡ଼ି ଦେବାପାଇଁ ମିତା କହିଥିଲା ମିହିରଙ୍କୁ । ସେ କାମଟା ସିଏ କରିନଥିଲେ । ତେଣୁ ମିତା ନିଜେ କାର୍ ନେଇ ମେକାନିକ୍‌କୁ ଆଣି ମଟର ସାଇକେଲ୍ ତିଆରି କରିବାକୁ ଦେଇଥିଲା । ଏତେଦିନରେ ପିଲାଟା ଆସୁଛି, କୁଆଡ଼େ ସାଂଗମାନଙ୍କ ପାଖକୁ ଯିବ, ମଟରେ ସାଇକେଲଟା ଠିକ୍ ନ ଥିଲେ ସିଏ ହଇରାଣ ହେବ ନିଶ୍ଚୟ । ମେକାନିକ୍ କାଲି ମିଟୁ ଗାଡ଼ିରେ ପେଟ୍ରୋଲ ପକାଇ, ବ୍ରେକ୍ ଠିକ୍ କରି ପୋଛାପୋଛି କରି ଆଣି ଦେଇଯାଇଛି ଘରେ ।

ସାଢ଼େ ସାତଟା ବେଳକୁ ମିତା ଶାଢ଼ୀ ପିନ୍ଧି ଷ୍ଟେସନ ଯିବାପାଇଁ ତିଆରି ହୋଇଗଲା । ଟ୍ରେନ୍ ଲେଟ୍ ଅଛି କହି ମିହିର ଯେତେ ମନାକଲେ ବି ମିତା ଆଉ ଶୁଣିବା ଅବସ୍ଥାରେ ନଥିଲା । ସିଏ ଯୁକ୍ତି କରିଥିଲା ଯଦି ଟ୍ରେନ୍, ମେକ୍‌ଅପ କରି ଚାଲିଆସିବ ତାହେଲେ ମିଟୁ ଷ୍ଟେସନରେ ପହଞ୍ଚିଲାବେଳେ କେହି ସେଠି ନଥିବେ । ତାକୁ ବହୁ ତ ଖରାପ ଲାଗିବ । ତା ଛଡ଼ା କାମ ତ ସବୁ ସରିଲାଣି, ଘରେ ଖାଲିଟାରେ ବସିବାଠାରୁ ଷ୍ଟେସନ୍‌ରେ ପହଞ୍ଚି ଅପେକ୍ଷା କରିବା ବରଂ ଭଲ । ଇଚ୍ଛା ନଥିଲେ ବି ମିହିରଙ୍କୁ ବାହାରିବାକୁ ପଡ଼ିଲା । ଷ୍ଟେସନରେ ପହଞ୍ଚିଲାବେଳକୁ ଆଠଟା ବାଜିବାକୁ ଆହୁରି ପନ୍ଦର ମିନିଟ୍ ବାକି । ତଥାପି ମିତାକୁ ଲାଗୁଥାଏ ଟ୍ରେନ୍‌ଟା ଆସି ପହଞ୍ଚିଯାଇନି ତ ! ସେ ଏନ୍‌କ୍ୱାରି ବାଲା ଠିକ୍ କହିଛି ତ ! ପ୍ଲାଟଫର୍ମରେ ପହଞ୍ଚି ଗାଡ଼ି ଆସିନି ଦେଖି ମିତା ଆଶ୍ୱସ୍ତ ହେଲା । ଆଉ ଯେମିତି ଆନାଉନ୍‌ସ କରାଗଲା ଯେ ଗୀତାଞ୍ଜଳି ତିନି

ନମ୍ବର ପ୍ଲାଟଫର୍ମରେ ଲାଗିବ ମିତା ସିଡି ଆଡକୁ ଦୌଡ଼ିବାକୁ ଲାଗିଲା । ପଛରେ ମିହିର ମିତା ଉପରେ ବିରକ୍ତ ହୋଇ ମିତା ପଛେ ପଛେ ଚାଲିବାକୁ ଲାଗିଲେ । ଆରପଟକୁ ଚାଲିଯାଇ ଦୁଇଟା କୁଲିଙ୍କୁ ପଚାରି ଏସ୍ ଫୋର୍‌ଟା ଯେଉଁଠି ରହିବ ସେହି ପାଖରେ ଥିବା ବେଞ୍ଚରେ ବସିପଡ଼ିଲା ମିତା । ମନରେ ଅନେକ ଚିନ୍ତା । ପ୍ରଥମ ଥର ପାଇଁ ଏକୁଟିଆ ଆସୁଛି ମିଟୁ ଟ୍ରେନ୍‌ରେ । ଅବଶ୍ୟ ସାଂଗରେ ତାର ପିଲାଟିଏ ଅଛି ତାରି ଶ୍ରେଣୀର । ହେଲେ ବି ମିତାକୁ ଖୁବ୍ ଡର ଲାଗୁଛି । ବାରମ୍ବାର କହିଥିଲା ଆସିଲାବେଳେ ସାଂଗରେ ମୋବାଇଲ୍‌ଟା ନେଇ ଆସିବା ପାଇଁ, ତାହେଲେ ନାଗପୁର କିମ୍ବା ବିଳାସପୁର ଠାରୁ ସିଏ ଫୋନ୍ କରିପାରିଥା'ନ୍ତା । ମିଟୁ କିନ୍ତୁ ଫୋନ୍‌ଟି ଆଣିନାହିଁ ନିଶ୍ଚୟ । କାହିଁକିନା ଯେତେବେଳେ ଫୋନ୍ କଲେ ଖାଲି ରିଂ ହେଉଛି ଅଥଚ କେହି ଧରୁନାହାନ୍ତି । ମିଟୁକୁ କୁଆଡ଼େ ମୋବାଇଲ୍ ପକେଟ୍‌ରେ ରଖିବାକୁ ଲାଜଲାଗେ । କାଳେ କିଏ ଭାବିଦେବ ଫୁଟାଣି ମାରୁଛି ବୋଲି । ଏମିତି ପିଲା ସଂସାରରେ କେମିତି ଚଳିବ ?

ଷ୍ଟେସନ୍ ଧୀରେ ଧୀରେ ଲୋକାରଣ୍ୟ ହେଉଥାଏ । ମିତା ପାଖରେ ବେଞ୍ଚରେ ବସିପଡ଼ି ମିହିର କହିବାକୁ ଲାଗିଲେ, ତାଙ୍କର ଜଣେ ଚିହ୍ନାଲୋକଙ୍କ ପୁଅ ଥରଟେ କୁଆଡେ କେଉଁ ଏକ ପରୀକ୍ଷା ଦେବାପାଇଁ ରାଉର୍‌କେଲାରୁ କଲିକତା ଯାଉଥିଲା । ବାଟରେ କେଜାଣି କିଏ କ'ଣ ଦେଲେ ଖାଇବାକୁ । ଫଳରେ ସିଏ ଅଚେତ ହୋଇଯାଇଥିଲା । କଲିକତାରୁ ତାକୁ ନେବାପାଇଁ ଆସିଥିବା ଭଦ୍ରଲୋକ ତାକୁ ଅଚେତ ଅବସ୍ଥାରେ ସେ କୋଚ୍‌ରେ ଦେଖିଥିଲେ । ତାର ଜିନିଷପତ୍ର ମଧ ସବୁ ଚୋରି ହୋଇଯାଇଥିଲା । ଏ କଥା ଶୁଣି ମିତାର ଛାତି ଦାଉଁକିନା ହୋଇ ଉଠିଲା । ହେ ଭଗବାନ ! ମିଟୁର ଜିନିଷପତ୍ର ଚୋରି ହେଉ ପଛେ ସିଏ ଯେମିତି ଠିକ୍‌ରେ ଥାଉ । ବାଳୁରା ପୁଅ ତାର ପାଠଟି ଛଡା କିଛି ଜାଣେନି । ସେଥିପାଇଁ ମିତା ଫୋନ୍‌ରେ ମିଟୁକୁ ବାରମ୍ବାର କହିଥିଲା ବାଟରେ କିଏ କ'ଣ ଦେଲେ ନ ଖାଇବା ପାଇଁ । ମିତାର ମନେପଡିଲା । ଏଇ କିଛିଦିନ ତଳେ ସିଏ ସମାଜରେ ପଢ଼ିଥିଲା । ଝାଡ଼ଖଣ୍ଡରୁ ପିଲାଟିଏ ନେଭିରେ କ'ଣ ପରୀକ୍ଷା ଦେବାପାଇଁ ଭୁବନେଶ୍ୱର ଆସିଥିଲା । ସେଠି ପରୀକ୍ଷା ଦେଇଥିଲା ଓ ଟ୍ରେନ୍‌ରେ ଚଢ଼ିବା ଆଗରୁ ତା ବାପାଙ୍କ ପାଖକୁ ଫୋନ୍ ବି କରିଥିଲା । କିନ୍ତୁ ପରେ ଯେଉଁ ଟ୍ରେନ୍‌ରେ ଫେରିବା କଥା ସେଥିରେ ଫେରିଲାନି ଓ ନିଖୋଜ୍ ହେଇଗଲା । ହେ ପ୍ରଭୁ, ପୁଅକୁ ତାର ରକ୍ଷାକର । ଭଗବାନଙ୍କ ଉଦ୍ଦେଶ୍ୟରେ ମିତା ପ୍ରଣାମ ଜଣାଇଲା ଓ ମନେ ମନେ ହନୁମାନ ଚାଳିଶା ଗାଇବାକୁ ଲାଗିଲା । ଏଥର ମିତା ପୁଅକୁ ମନା କରିଦେବ, ଏତେ

ହଇରାଣ ହେଇ ଏତେ କମ୍‌ଦିନ ପାଇଁ ଘରକୁ ଆସିବା ଦରକାର ନାହିଁ । ସିଏ ହଷ୍ଟେଲ୍‌ରେ ଥାଉ, ଭଲରେ ଥାଉ । ଖାଲି ତାକୁ ଦମ୍ଭ ଲାଗୁଥାଏ ସାଂଗରେ ଅନ୍ୟ ପିଲାଟିଏ ଅଛିବୋଲି । ସିଏ ରାଉରକେଲାର ହେଇଥିଲେ ଏତେବେଳକୁ ଫୋନ୍ କରି ମିତା ପଚାରି ସାରନ୍ତାଣି ସତରେ ସେମାନେ ଆସୁଛନ୍ତି କି ନାହିଁ, କିନ୍ତୁ ତା' ଘର ତ ଗୁମ୍‌ଲାରେ । ତା ବାପା ମାଙ୍କ ଫୋନ୍ ନମ୍ବର ବି ମିତା ଜାଣିନି ।

ମିତାର ମନର ଅବସ୍ଥା ନ ବୁଝିପାରି ମିହିର ପୁଣି କହିବା ଆରମ୍ଭ କଲେ । ତାଙ୍କ ଡାକ୍ତରଖାନାର ଡାକ୍ତର ମିତ୍ର ରିଟାୟାର୍ ହୋଇ ଏଠୁ କଲିକତା ଗଲାବେଳେ କେମିତି ଜଣେ ଲୋକ ତାଙ୍କ ସାଂଗେ ଖୁବ୍ ସାଂଗ ହୋଇ ତାଙ୍କୁ ଫ୍ରୁଟି କିଣି ପିଆଇଥିଲା । ତା' ପରେ ତାଙ୍କର ଆଉ କିଛି ମନେ ନାହିଁ । ଯେତେବେଳେ ଚେତା ଆସିଲା ଦେଖିଲେ ଗୋଟିଏ ଡାକ୍ତରଖାନାରେ ପଡ଼ିଛନ୍ତି, ଦେହରେ ଅଣ୍ଡରଓୟାର୍ ଛଡା ଆଉ କିଛି ନାହିଁ । ପରେ ପଚାରି ଜାଣିଲେ ଯେ ସେ ଜାଗାଟା ଥିଲା ବର୍ଦ୍ଧମାନ୍ । ନିଜେ ଡାକ୍ତର ବୋଲି ପରିଚୟ ଦେଲେ ବି ପ୍ରଥମେ କେହି ବିଶ୍ୱାସ କରିନଥିଲେ । ପରେ ସବୁ ଜାଣିଲାପରେ ସେଠାକାର ଷ୍ଟାଫ୍‌ମାନେ ଚାନ୍ଦାକରି ତାଙ୍କୁ କଲିକତା ଫେରିବା ପାଇଁ ଟଙ୍କା ଦେଇଥିଲେ । ଡାକ୍ତର ମିତ୍ର କୁଆଡେ ଭାରି ହୁସିଆର ଓ ଚାଲାଖି ଲୋକ ଥିଲେ । ସହଜରେ କାହାକୁ ବିଶ୍ୱାସ କରନ୍ତିନି । ଏ କଥା ଶୁଣି ମିତାର ଗୋଟା ଦେହ ଥରିଉଠିଲା । ମନେ ମନେ ସିଏ ମିହିରଙ୍କ ସାଙ୍ଗେ କଥା ନ ହେଇ ହନୁମାନ ଚାଳିଶା ଗାଇବାକୁ ଲାଗିଲା । ହନୁମାନ ଚାଳିଶା ଗାଇଲେ ସବୁ ସଙ୍କଟ ଦୂର ହେଇଯାଏ ବୋଲି ମିତାର ଧାରଣା । ପରେ ପରେ ସିଏ କୃଷ୍ଣ, କ୍ରାଏଷ୍ଟ ଓ ଆଲ୍ଲାଙ୍କୁ ସ୍ମରଣ କରିବାକୁ ଲାଗିଲା ତା' ପୁଅକୁ ରକ୍ଷା କରିବାପାଇଁ ।

ଯା ଭିତରେ ଟ୍ରେନ୍ ଆସିବାର ଦ୍ୱିତୀୟ ଘଣ୍ଟି ବାଜିଲା । ଟ୍ରେନ୍‌ଟି ଦୂରରୁ ଦୃଶ୍ୟହେଲାଣି । ଟ୍ରେନ୍ ସାଂଗେ ତାଳ ଦେଇ ମିତାର ହୃଦୟର ସ୍ପନ୍ଦନ ବି ବଢ଼ିବାକୁ ଲାଗିଲା । ମିତା ବେଞ୍ଚରୁ ଉଠି ଠିଆ ହୋଇପଡ଼ିଲା । ଟ୍ରେନ୍ ଧୀରେ ଧୀରେ ଷ୍ଟେସନ ଭିତରେ ପଶିଲା । ପ୍ରଥମେ ଏ.ସି. କମ୍ପାର୍ଟମେଣ୍ଟ ତା ପଛକୁ ଏସ୍.ୱାନ୍...ଏସ୍ ଟୁ... । ମିତାର ନଜର ଏସ୍ ଫୋର୍‌ରେ । ମିତା ସାମନାରେ ଠିକ୍ ଏସ୍ ଫୋର୍ ପାର ହୋଇ, ଗାଡ଼ି ଅଟକି ଗଲା । ମିହିର ଦୌଡ଼ିକରି ସେ କମ୍ପାର୍ଟମେଣ୍ଟ ଭିତରକୁ ପଶିଗଲେ ଓ ମିତା ପ୍ରତ୍ୟେକ ଝରକା ପାଖରୁ ଉଣ୍ଡି ଉଣ୍ଡି ଦେଖିବାକୁ ଲାଗିଲେ । କିନ୍ତୁ କାଇଁ, ମିଟୁ ତ କେଉଁଠି ଦିଶୁନି । ମିହିର ଆଉ କବାଟ ପଟୁ ପ୍ଲାଟଫର୍ମକୁ ଓହ୍ଲାଇ ଆସି କହିଲେ, ସିଏ ତ ନାହିଁ । କିଏ କିଏ ମୁହଁ ଘୋଡ଼େଇ ହୋଇ

ଶୋଇଛନ୍ତି । ସେମାନଙ୍କ ଭିତରୁ ମିଟୁ ରହିଗଲା କି ? ହୁଏତ ଶୋଇଯାଇଛି ତରତରରେ ମିତା କମ୍ପାର୍ଟମେଣ୍ଟ ଭିତରକୁ ପଶିଯାଇ ଶୋଇଥିବା ଲୋକଙ୍କ ମୁହଁରୁ ଚାଦର କାଢ଼ି ଦେଖିଲାଗିଲା । ସବୁଲୋକ ଆଶ୍ଚର୍ଯ୍ୟ ହୋଇ ତାକୁ ଚାହୁଁଥିଲେ । ସେମାନେ କିଛି କହିବା ଆଗରୁ ମିତା ପର ବର୍ଥର ଶୋଇଥିବା ଲୋକର ମୁହଁରୁ ଚାଦର କାଢୁଥିଲା । କେତେବେଳେ ଚଢ଼ିଯାଇ ଉପର ବର୍ଥ ଶୋଇଥିବା ଲୋକଙ୍କ ମୁହଁ ଦେଖୁଥିଲା । ନା, ଶୋଇଥିବା ଲୋକଙ୍କ ଭିତରେ ମିଟୁ ନଥିଲା । ଟ୍ରେନ୍‌ରୁ ଓହ୍ଲାଇଲାବେଳେ ମିତାର ମୁହଁ କାନ୍ଦ କାନ୍ଦ ଦିଶିଲା । ଗତ ରାତିରେ ଇଣ୍ଟରନେଟ୍‌ରେ ଦେଖିଥିବା-ମିଟୁର ସେଇ ପୁରୁଣା ଚିଠି ମନେପକାଇଲା ଆଉଥରେ-ହଁ, ସିଏ ତ ଲେଖିଥିଲା ଏସ୍ ଫୋର୍‌ରେ ଆସିବ ଆଉ ଫେରିବ ଏସ୍ ଓ୍ବାନ୍‌ରେ । ପାଗଳ ଭଳିଆ ପଛକୁ ଦୌଡ଼ି ଦୌଡ଼ି ମିତା ଦେଖୁଥିଲା ଝରକା ପଟେ ଏସ୍-ପାଞ୍ଚ, ଛ, ସାତ । ଟ୍ରେନ୍ ହୁଇସିଲ୍ ଦେଇ ଚାଲିବାକୁ ଆରମ୍ଭ କରିଥିଲା ଓ ମିତା ସାମନାରେ ଚାଲିଗଲା ମଧ୍ୟ । ପଛରୁ ମିହିର ଆସି କହିଲେ, ସିଏ ଗେଟ୍ ପାଖକୁ ଯାଉଛନ୍ତି ଓ ମିତା ଯେମିତି ସିଡ଼ି ପାଖରେ ରହେ । ମିତାର ତଣ୍ଟି ଅଠା ଅଠା ହୋଇ ବାକ୍‌ଶକ୍ତି ଲୋପପାଇ ଯାଇଥିଲା ଏବଂ ତା ପିଣ୍ଡରେ ପ୍ରାଣ ନଥିଲା ଭଳି ଲାଗୁଥିଲା । ମିହିରଙ୍କ ପରି ଧୈର୍ଯ୍ୟବାନ, ଧୀର ସ୍ଥିର ଲୋକ ବି ଦୌଡ଼ି ଦୌଡ଼ି ସିଡ଼ି ଚଢ଼ି ଗେଟ୍ ପାଖକୁ ଚାଲି ଯାଇଥିଲେ ।

ସିଡ଼ି ପାଖେ ଛିଡା ହୋଇ ମିତା ଚାରିଆଡ଼େ ଅନାଇଲା । ଯୁଆଡ଼େ ଦେଖ ଲୋକ କାହାକୁ ପଚାରିବ ମିଟୁ କଥା ? ପାଟିରୁ ବାହାରିପଡ଼ିଲା ହେ ଭଗବାନ ! ହଠାତ୍ ମା-ଡାକରେ ପଛକୁ ଫେରିଚାହିଁଲା ମିତା । କାନ୍ଧରେ ଏୟାରବେଗ୍ ଓ ହାତରେ ସୁଟକେଶ୍ ଧରି ମିଟୁ ଆସୁଛି । ମିତା ଆଖିରୁ ଧାର ଧାର ଲୁହ ଗଡ଼ିବା ଆରମ୍ଭ ହେଇଯାଇଥିଲା । ସେ ଲୁହ ଥିଲା ଆନନ୍ଦର । ମିତା ପଚାରିଲା, କେଉଁଠି ଥିଲୁରେ ବାବା ? ପାପା, ମୁଁ କେତେ ଖୋଜିଲୁ । ମିଟୁ କହିଲା, ତୁମକୁ ତ ଲେଖିଥିଲି ଆସିଲାବେଳେ ଏସ୍ ଓ୍ବାନ୍‌ରେ ଓ ଫେରିଲାବେଳେ ଏସ୍ ଫୋର୍‌ରେ ଟିକେଟ ହେଇଛି । ଓଃ ମିଟୁ ତାହେଲେ ଓଲଟା ଲେଖିଛି । ବାଲୁରା, ଅନ୍ୟମନସ୍କ ରହୁଥିବା ପୁଅକୁ ଆଉଁସି ପକାଇଲା ମିତା ।



# ଦୃଷ୍ଟି

ମିତାର ନିଦ ଭାଙ୍ଗୁ ଭାଙ୍ଗୁ କାନ୍ଥଘଡ଼ିକୁ ଅନାଇଲା ସିଏ । ମାତ୍ର ସାତଟା ବାଜିଛି । ଆଜି ସିଏ ଆହୁରି ଘଣ୍ଟାଏ କ୍ଷେଯରେ ଶୋଇ ଗଡ଼ପଡ଼ ହେଇପାରିବ । ପାଖରେ ଶୋଇଛି ବଉଦ ବର୍ଷର ଝିଅ ଟିନା । ଏସି ଲାଗିଥିବାରୁ ଟିନା ଢାକିଢୁକି ହୋଇ ଶୋଇଛି । ମିତା ଉଠିଯାଇ ଏସି ବନ୍ଦ କରିଦେଲା ଓ ପତଳା ଚାଦରଖଣ୍ଡେ ଟିନାକୁ ଘୋଡ଼ାଇ ଦେଇ ନିଜେ ମଧ୍ୟ ଉପ୍ତ ହେଲା । ଅନ୍ୟ ଦିନର ଏତେବେଳକୁ ତା'ର ଅଧା କାମ ସରିଯାଇଥାଏ । କାଲି ରାତିରେ ମିହିର ତପସ୍ୱିନୀରେ ଯାଇଛନ୍ତି । ଭୁବନେଶ୍ୱରରେ ପହଞ୍ଚି ସାରିବେଣି । ଭୁବନେଶ୍ୱରରୁ ଧରି ବ୍ରହ୍ମପୁର ଯିବେ ଶାଶୁ ଶ୍ୱଶୁରଙ୍କ ପାଖକୁ । ଏବେ ଯିବା କ'ଣ ଦରକାର ଥିଲା ? ମିତା ଏତେ ମନାକଲେ ବି ଶୁଣିଲେନି । ଆଜି ମାସର ଦ୍ୱିତୀୟ ଶନିବାର, ତେଣୁ ଛୁଟି । ସୋମବାର ପଣା ସଂକ୍ରାନ୍ତି । ତେଣୁ ରବିବାରକୁ ମିଶାଇ ପୂରା ତିନିଦିନ ଛୁଟି । ସେଥିପାଇଁ ବ୍ରହ୍ମପୁର ଯାଇ ନିଜ ବାପା ମା'ଙ୍କୁ ଦେଖିଆସିବେ । ଏପ୍ରିଲ ମାସରୁ ଏତେ ଗରମ ପଡ଼ିଲାଣି । ଆଉ ଏଇ ଗରମ ପାଇଁ ହିଁ ମିତା ମନା କରୁଥିଲା ଯିବା ପାଇଁ । ବର୍ଷା ପଡ଼ିଲାପରେ ଗଲେ କ'ଣ ହେଇ ନ'ଥାନ୍ତା ? ରାଉରକେଲାରୁ ଭୁବନେଶ୍ୱର ପର୍ଯ୍ୟନ୍ତ ଯିବା ଆଉ ଫେରିବା ଟିକେଟ ମିତା ମିହିରଙ୍କ ସଂଗେ ଜଜି କରି ଏସିରେ କରାଇଛି । ତା' ଛଡା ରାତିରେ ଏତେ କଷ୍ଟ ବି ହେବନି । କିନ୍ତୁ ଭୁବନେଶ୍ୱରରୁ ବ୍ରହ୍ମପୁର ଯିବା ଓ ପୁଣି ଫେରିଲାବେଳକୁ ପୂରା ଗରମ ଦେହରେ ଲାଗିବ । ସେଥିପାଇଁ ମିତାର ବହୁତ ଚିନ୍ତା । ବାରମ୍ବାର ମିହିରଙ୍କୁ କହିଛି ବାଟରେ ପଇଡ଼ ପାଣି, ଲସି, କୋଲ୍ଡ଼ ଡ୍ରିଙ୍କସ୍ ଆଦି ପିଇବା ପାଇଁ । ସାଙ୍ଗରେ ମଧ୍ୟ ପୋଡ଼ା କଞ୍ଚା ଆମ୍ବର ରସ ବାହାର କରି ସେଥିରେ କଳା ଲୁଣ, ଚିନି ଜିରାଗୁଣ୍ଡ ମିଶାଇ ବୋତଲରେ ଦେଇଛି । ଖାଲି ପାଣି ମିଶାଇ ପିଇବା କଥା । ସେ ପୋଡ଼ା ଆମ୍ବର ରସ ପିଇଲେ ଲୁ ଲାଗିବନି । ସେଠାରେ ନଣନ୍ଦଙ୍କ ଘରକୁ, କକେଇ ଶ୍ୱଶୁରଙ୍କ ଘରକୁ ଦିନବେଳା ଯିବା ପାଇଁ ମନା କରିଛି । ସନ୍ଧ୍ୟା ପରେ ଯୁଆଡ଼େ ଯିବା କଥା ଯିବ ବୋଲି କହିଛି । ମିହିର ତା' କଥା ରଖିବେ ବୋଲି ବିଶ୍ୱାସ ଲାଗୁନି । ସେଥିପାଇଁ ତ ମିତାର ଯେତିକି ଚିନ୍ତା । ତା' ଛଡ଼ା ସମାଜରେ ବାହାରିଥିଲା ବ୍ରହ୍ମପୁରରେ କୁଆଡେ ପାଣିର ବହୁତ ଅସୁବିଧା । କ'ଣ କରିବେ କେଜାଣି ?

କାମରେ ବ୍ୟସ୍ତ ରହିଲେ ତା'ର ଚିନ୍ତାଟା ଟିକିଏ ହୁଏତ କମନ୍ତା । କିନ୍ତୁ ଆଜି ଦିନସାରା ତା'ର କିଛି କାମ ନାହିଁ । ଟିନାର ଇଂରାଜୀ ମାଧ୍ୟମ ସ୍କୁଲ ହୋଇଥିବାରୁ ଆଜି ତା'ର ଛୁଟି ।

ଗରମ ଦିନେ, ବର୍ଷା ଦିନ ଅବା ଶୀତଦିନ ଭଳି ଗରମ ଗରମ ଜଳଖିଆ ମିତା କରେନା । ଏ ଖରା ତିନିମାସ ଚୂଡା କଦଳୀ, ଚୁଡା ଦହି ଇତ୍ୟାଦି ଚଳେଇଦିଏ । ତେଣୁ ଆଜି ଜଳଖିଆର ଝାମେଲା ବି ନାହିଁ । ଆଉ ବାରଟା ବେଳ ପାଇଁ କାଲିଠାରୁ ଭାତ ପଖାଳି ରଖି ଦେଇଛି । ଫ୍ରିଜ୍‌ରେ ମାଛ ଅଛି । ଖାଇଲାବେଳେ ପିଠୋଉ ଦିଆହୋଇ ଭଜା ହେବ, କିଛି ଭିଆ ବଡ଼ି ଛଣାହେବ । ସାଙ୍ଗରେ କାକୁଡି, ପିଆଜ ଓ କଞ୍ଚାଲଙ୍କା ଆଉ ଭାତରେ ମିଶାଇବା ପାଇଁ ବସାଦହି ।

କଲିଂବେଲଟା ବାଜି ଉଠିଲା । ମିତା ଘଣ୍ଟାକୁ ଚାହିଁ ଦେଖିଲା ଆଠଟା ବାଜିଲାଣି-କାମ କରିବା ପାଇଁ ଲକ୍ଷ୍ମୀ ଆସିଗଲା ବୋଧେ । ଲକ୍ଷ୍ମୀ ସାଧାରଣତଃ ସକାଳ ଛ'ଟାରେ ଆସେ । ମିତା ତାକୁ ଏ ତିନିଦିନ ଆଠଟାରେ ଆସିବାକୁ କହିଥିଲା । ତା' ହେଲେ ସେ ଟିକେ ଡେରି ଯାଏଁ ଶୋଇପାରିବ । ଖଟରୁ ଉଠିପଡ଼ି ଚପଲଟା ଗଳାଇ କବାଟ ଖୋଲିଲା ମିତା । ସତରେ ଲକ୍ଷ୍ମୀ ଆସିଛି । ଲକ୍ଷ୍ମୀକୁ ଚା' କରିବା ପାଇଁ କହିଦେଇ ଗାଧୁଆଘରେ ପଶିଗଲା ମିତା ।

ସାଢ଼େ ନ'ଟା ଭିତରେ ମିତାର ନିତ୍ୟକର୍ମ, ଠାକୁର ପୂଜା ଓ ଜଳଖିଆ ପର୍ବ ସବୁ ସରିଗଲା । ତା ଭିତରେ ଲକ୍ଷ୍ମୀର ବାସନାମଜା, ଲୁଗାକଚା, ଘର ଓଳା ବି । ଟିନା ବି ଜଳଖିଆ ଖାଇ ତା'ର ପଢ଼ାଘରେ ପଶିଲା । ନବମ ଶ୍ରେଣୀରେ ପଢୁଛି ଟିନା । ମା'କୁ କେବେ କୌଣସି କଥାରେ ହଇରାଣ କରେନି ଖିଆପିଆ ନେଇ । ଲକ୍ଷ୍ମୀ ଚାଲିଗଲା ପରେ ମିତା ଭାବିଲା ରୋଷେଇ ଘରର ଥାକ ଓ ଷ୍ଟୋର ଘରର ଥାକ ସଜାଡ଼ିବ । କିନ୍ତୁ ଦେଖିଲା ଏତେ ଗରମ ହେଉଛି ଯେ ସେଠି ପାଞ୍ଚମିନିଟ ରହିବା ଅସମ୍ଭବ ହେଇପଡୁଛି । ଶେଷରେ ଷ୍ଟାଣ୍ଡ ଫ୍ୟାନ୍‌ଟାକୁ ନେଇ ରଖି ଥାକ ସଜାଡ଼ିବାରେ ମନଦେଲା । କିନ୍ତୁ ଝାଳରେ ବୁଡ଼ିଗଲା ମିତା । ଫ୍ୟାନ୍‌ରୁ ଖାଲି ଗରମ ପବନ ବାହାରୁଛି । ତେଣୁ ବାଧ୍ୟହୋଇ ଡ୍ରଇଂ ରୁମ୍‌କୁ ଆସି କୁଲର ଲଗାଇ ତା ସାମ୍ନାରେ ଠିଆହେଲା । ଦେହରୁ ଝାଳ ମରିଗଲାପରେ ସୋଫାରେ ବସି ପଡ଼ି ଟେବୁଲରୁ 'ଝଂକାର' ପତ୍ରିକାଟି ଉଠାଇଆଣିଲା । ଏଇ ଗରମ ପାଇଁ ଟି.ଭି. ଦେଖା ବା ମ୍ୟାଗାଜିନ୍ ପଢ଼ିବା ବ୍ୟତୀତ ଅନ୍ୟ କୌଣସି କାମ କରି ହେବନି ।

ଏତିକିବେଳେ ସାମନା କବାଟ ପାଖେ ଦେଖାଦେଲେ ପଡ଼ୋଶୀ ମିସେସ୍ ମହାନ୍ତି । ଖୁବ୍ ଖୁସି ହେଇଗଲା ମିତା । ଯାହା ହେଉ ଗପସପ କରି କିଛି ସମୟ କଟାଯାଇପାରେ । ମିସେସ୍ ମହାନ୍ତି ଜାଣିଥିଲେ ଏ ତିନି ଦିନ ମିହିର ରହୁ ନାହାନ୍ତି ବୋଲି । ତେଣୁ ସମୟ କଟାଇବା ପାଇଁ ସିଏ ଆସିଥିଲେ ମିତା ପାଖକୁ । ତା ପରେ ଗପର ସୁଅ ଛୁଟିଥିଲା । ମଝିରେ କୋଲ୍ଡ଼ କଫି ବି ପିଇଥିଲେ ଦୁଇଜଣ । ଏଇ ସମୟରେ ଗେଟ୍‌ରେ ଆୱାଜ୍ ହେଇଥିଲା । ମିତା ଯାଇ ଦେଖିଲା ଫେରିବାଲାଟିଏ ଆସିଛି-କହୁଛି ସମ୍ବଲପୁରୀ ଶାଢ଼ୀ ଆଣିଛି । ସମୟ

କାଟିବା ପାଇଁ ଶାଢ଼ୀ ଦେଖାର ସୁଯୋଗ କିଏ ଛାଡ଼େ ? ଏବେ ସାଢ଼େ ଦଶଟା ବାଜିଛି ମାତ୍ର । ସାଢ଼େ ଏଗାରଟାରେ ରୋଷେଇ କାମ ଆରମ୍ଭ କଲେ ହେଇଯିବ । ତେଣୁ ଘଣ୍ଟାଟେ ଶାଢ଼ୀ ଦେଖାକାମ ହୋଇପାରିବ । ମିସେସ୍ ମହାନ୍ତି କହିଲେ ତାଙ୍କର ଶାଢ଼ୀ କିଣିବାର ନାହିଁ । ମିତା ତାଙ୍କ ସାଂଗେ ତାଳ ଦେଇ କହିଲା ତାର ମଧ କିଣିବାର ନାହିଁ କିନ୍ତୁ ଶାଢ଼ୀ ଦେଖିବାରେ ତ କିଛି ଅସୁବିଧା ନାହିଁ । ତା ପୁଣି ଘରେ ବସି । ଯାହାହେଉ ଦୁଇ ସାଙ୍ଗ ମିଶି ଶାଢ଼ୀବାଲାକୁ ଡାକିଲେ । ଶାଢ଼ୀବାଲାଟି ଥିଲା ମଧ ବୟସ୍କ । ପିଠିରୁ ବିରାଟ ଗଣ୍ଠିଲିଟି ଖୋଲି ତଳେ ଥୋଇଲା । ନିଜ ପାଇଁ ପାଣି ଓ ଶାଢ଼ୀ ଦେଖାଇବା ପାଇଁ ମଶିଣା ମାଗିଲା । ମିତା ଲକ୍ଷ୍ୟକଲା ଝାଳରେ ଲୋକଟି ପୂରା ଜୁତୁବୁତୁ ହୋଇଯାଇଛି ଓ ମୁହଁଟା ଗରମ ପାଇଁ ପୂରା ଲାଲ୍ ହୋଇ ଯାଇଛି । ମିତା ଦେଇଥିବା ଲିଟରକିଆ ବୋତଲଟିକୁ ଟେକି ଢ଼କଢ଼କ କରି ଗୋଟେ ନିଶ୍ୱାସରେ ପୂରା ବୋତଲକଯାକ ପାଣି ପିଇଦେଲା ଲୋକଟି ଓ ମଶିଣା ପକାଇ ଗଣ୍ଠିଲି ଖୋଲି ଶାଢ଼ୀ କାଢ଼ିଲା ।

ଦୁଇଜଣଯାକଙ୍କର ତ ଶାଢ଼ୀ କିଣିବାର ନାହିଁ । ତେଣୁ ସବୁ ଶାଢ଼ୀକୁ ବାଛୁ ଥାଆନ୍ତି ସେମାନେ । ଯଥା କାହାର ଦେହର ରଙ୍ଗ ଠିକ୍ ନାହିଁ, କେଉଁ ଶାଢ଼ୀର କାନିଟା ଏକଦମ୍ ଗାଉଁଲିଆ । ଶାଢ଼ୀବାଲା ତ ଆଉ ଏତେ କଥା ଜାଣିନି । ସିଏ ଗୋଟେ ପରେ ଗୋଟେ ଶାଢ଼ୀ ଦେଖେଇ ଚାଲିଛି । ମିତା ଦେଖିଲା ତା ପାଖରେ ପୁତୁଲି ଶାଢ଼ୀ ନାହିଁ । ତେଣୁ ଫେରିବାଲାକୁ କହିଲା ତାର ପୁତୁଲି ଶାଢ଼ୀ ଗୋଟେ ରଖିବାର ଥିଲା । କିନ୍ତୁ ଫେରିବାଲାଟି ପାଖରେ ତ ନାହିଁ ଆଉ ସିଏ କ'ଣ କରିବ ? ମିତାର ଦୁର୍ଭାଗ୍ୟକୁ ସିଏ କହୁ କହୁ ଶାଢ଼ୀଟାଏ ବାହାର କରି ଆଣିଲା ଫେରିବାଲା । ତାର ରଙ୍ଗ ଥିଲା ଆଉଟା ସୁନା ଭଳି, ଦେହସାରା କଳା ରଙ୍ଗର ପୁତୁଲିମାନ । ଦାମ୍ ଥିଲା ବାରଶହ ଟଙ୍କା । ମିତା ଆଠଶହ ଟଙ୍କାରେ ତାକୁ ମୂଲାଇଲା । ଯଦିଓ ସିଏ ଜାଣିଥିଲା ଯେ ଆଠଶହରେ କେହିବି ତାକୁ ସେମିତି ଶାଢ଼ୀ ଦେବେନି । ବଡ ବଡ ଦୋକାନରେ ସେ ଶାଢ଼ୀର ଦାମ୍ ବାରଶହ ଟଙ୍କା । କିନ୍ତୁ କୋଜାଣି କେମିତି ଫେରିବାଲା ଆଠଶହ ଟଙ୍କାରେ ସେ ଶାଢ଼ୀଟି ଦେବାକୁ ରାଜି ହେଇଗଲା । ମିତା ମୁଣ୍ଡରେ ଚଡ଼କ ପଡ଼ିଲା । କେମିତି ଶାଢ଼ୀବାଲା ପାଖରୁ ପାର ପାଇବ ବୋଲି ବିକଳ ହୋଇ ମିସେସ୍ ମହାନ୍ତିଙ୍କୁ ଅନାଇଲା । କାଇ ଠାର କାଇ ମା' ଜାଣିଲା ପରି ମିସେସ୍ ମହାନ୍ତି ମିତାକୁ କହିଲେ-ଏଇ ରଙ୍ଗର ଶାଢ଼ୀ ପ୍ରାୟ ସମସ୍ତେ ପିନ୍ଧୁଛନ୍ତି । ବରଂ ଗୁଣ୍ଡ ମେହେନ୍ଦି ବା କଅଁଳ କଦଳୀ ପତ୍ର ରଙ୍ଗ ହେଲେ ଭଲ ଲାଗିବ । ଶାଢ଼ୀ ବାଲା ପାଖରେ ଏ ରଙ୍ଗର ଶାଢ଼ୀ ନଥିଲା । ଅନ୍ୟ ପୁତୁଲି ଶାଢ଼ୀ ଦୁଇଟିର ରଙ୍ଗ ଥିଲା ପାଉଁଶିଆ ଓ ମାଟିଆ । ମିତା କହିଥିଲା ଅନ୍ୟର ରଚି ଅନୁସାରେ ପିନ୍ଧିବା ହେଉଛି ନିୟମ । କହିଥିବା ଦୁଇଟି ରଙ୍ଗରୁ ଗୋଟିଏ ରଙ୍ଗ ହେଲେ ବି

ଚଳିବ ଓ ସିଏ ନିଶ୍ଚେ ରଖିବ । ଶାଢ଼ୀବାଲା ବହୁତ ଅନୁନୟ ବିନୟ ହୋଇ ମିତାକୁ ସେ ହଳଦୀ ରଙ୍ଗର ଶାଢ଼ୀଟି ରଖିବାକୁ କହିଲା । ବର୍ଣ୍ଣନା କଲା ସିଏ କେତେ ପରିଶ୍ରମ କରି ବରଗଡ଼ରୁ ପ୍ରଥମେ ଆସେ ସମ୍ବଲପୁର । ସେଠି ଦୁଇଚାରି ଦିନ ଶାଢୀ ବିକ୍ରିକରି ପୁଣି ଆସେ ରାଉରକେଲା । ଏଠି ତା'ର କିଏ ଜଣେ ଗାଆଁ ଲୋକ ଅଛି । ରାତିରେ ସେଠି ରହେ, ବାହାରେ ଖିଆପିଆ କରେ । ଆଗରେ ସାବିତ୍ରୀ ଓ ରଜ ଥିବାରୁ ଓ ଗାଆଁରେ ଏହି ସମୟରେ ଚାଷ କମ କିଛି ନଥିବାରୁ ସିଏ ଏତେ ଖରାରେ ମଧ ଶାଢ଼ୀ ବିକ୍ରି କରିବାକୁ ଆସିଥାଏ । ପୁଣି ଯାଇ ଆସିବ ଆସନ୍ତା ବର୍ଷ । ମିତା ଖାଲି ବାରମ୍ବାର କହୁଥାଏ, ସେଇ ଗୁଣ୍ଡ ମେହେନ୍ଦି ରଙ୍ଗର ପୁଚୁଲି ଶାଢ଼ୀ ଆଣିଲେ ନିଶ୍ଚେ ରଖିବି । ସମୟ ବାରଟା ପାଖାପାଖି ହେଲାଣି । ମିତାକୁ ମାଛ ଭାଜିବାକୁ ପଡ଼ିବ । ମିସେସ୍ ମହାନ୍ତି ବି ତାଙ୍କ ଘରକୁ ଯିବାପାଇଁ ବାହାରିଲେଣି । ଶାଢ଼ୀବାଲା ମନ ଦୁଃଖରେ ତା'ର ଗଣ୍ଠିଲି ସଜାଡ଼ିବାକୁ ଲାଗିଲା । ଯିବା ଆଗରୁ ମିତାକୁ ପିଇବା ପାଇଁ ପାଣି ମାଗିଲା । ରୋଷେଇ ଘରକୁ ପାଣି ଆଣିବାକୁ ଯାଇ ମିତା ଦେଖିଲା ସାମନାରେ ଟିନା । ମା'କୁ ଦେଖି ଟିନା କହିଲା-'ତୁମର ଯଦି ଶାଢ଼ୀ କିଣିବାର ନଥିଲା, ତାହେଲେ ତା'ର ଏତେ ସମୟ କ'ଣ ପାଇଁ ନଷ୍ଟ କଲ ? ଏଇଟା ତୁମର ଖରାପ ଗୁଣ ନୁହେଁ କି ?' ଟିନା ତା'ହେଲେ ତା ପଢ଼ାଘରୁ ସବୁ ଶୁଣିଛି ।

ମିତାର ମନେ ପଡ଼ିଲା ଦୁଇଦିନ ଆଗେ କେଉଁ ଏକ ମ୍ୟାଗାଜିନ୍‌ରୁ ପଢ଼ିଥିଲା ଯେ ନିଜର ପାଞ୍ଚଟି ଖରାପଗୁଣ ଓ ପାଞ୍ଚଟି ଭଲ ଗୁଣ ତୁମର ନିଜ ଲୋକଙ୍କୁ ପଚାରିବ ଓ ଜାଣିଲାପରେ ଖରାପ ଗୁଣକୁ ସୁଧାରିବାକୁ ଚେଷ୍ଟା କରିବ । ମ୍ୟାଗାଜିନ୍‌ଟା ବନ୍ଦକରି ସାମନାରେ ବସିଥିବା ଟିନାକୁ ମିତା ନିଜର ପାଞ୍ଚଟି ଭଲଗୁଣ ଓ ପାଞ୍ଚଟି ଖରାପ ଗୁଣ ସଂପର୍କରେ ପଚାରିଥିଲା । ଟିନା ଉତ୍ତର ଦେଇଥିଲା-ତମର ଖରାପ ଗୁଣ ତ ଚଟାପଟ୍ କହିହେବ କିନ୍ତୁ ଭଲଗୁଣ ପାଇଁ ଭାବିବାକୁ ପଡ଼ିବ । ଟିନାର ଉତ୍ତରରେ ମିତାର ମୁହଁ ଶୁଖି ଯାଇଥିଲା । ମା'ର ମନର ଭାବ ମୁହଁରୁ ପଢ଼ିଦେଇଥିଲା ଟିନା ଓ କହିଥିଲା ଉଦାହରଣ ଦେଇ ସିଏ ଖରାପ ଗୁଣଗୁଡିକ କହିବ । ସେତେବେଳେ ମିତା ଭାବିଥିଲା ଯେବେଠାରୁ ଟିନା କୈଶୋରରେ ପାଦ ଦେଲାଣି ସେବେଠାରୁ ଏମିତି କଥାବାର୍ତ୍ତା କରୁଛି । ନ ହେଲେ ମିତାର ପୁଣି ଖରାପ ଗୁଣ କଅଣ ଅଛି ? ଅସମ୍ଭବ ।

ଟିନା ତାହେଲେ ଠିକ୍ କହୁଥିଲା । ଟିନା ଆଖିରେ ଆଖି ମିଳାଇପାରିଲାନି ମିତା । ଶାଢ଼ୀବାଲାକୁ ପାଣି ବୋତଲଟା ବଢ଼େଇ ଦେଉ ଦେଉ କହିଲା,'ସେ ହଳଦିଆ ଶାଢ଼ୀଟା ଦିଅ ।'



# ଶାଢୀ

ରିନି ଶାଢ଼ୀ ତିନିଖଣ୍ଡ ଅଲଗା, ଅଲଗା ଜରିରେ ରଖିବା ଆଗରୁ ବାରମ୍ବାର ରୋହିତଙ୍କୁ ଚିହ୍ନାଇ ଦେଉଥିଲା । ସବୁଜ ବର୍ଡର ଥିବା ଟମାଟୋ ରଂଗର ଶାଢ଼ୀଟି ମିନି ନାନୀଙ୍କର । ଜରି ବର୍ଡରର ସମୁଦ୍ର ନୀଳ ରଂଗର ଶାଢ଼ୀଟି କୁନିନାନୀଙ୍କର ଏବଂ ସବୁଜ ଓ କମଳା ରଂଗର କାମ ହୋଇଥିବା ଘିଅ ରଂଗର ଜାମଦାନୀ ଶାଢ଼ୀଟି ସାନ ଭଉଣୀ ଚିନିର । ଠିକ୍‌ରେ ନଦେଖିଲେ ଶାଢ଼ୀ ଗୁଡାକ ଦେଲା ବେଳକୁ ସବୁ ଓଲଟ ପାଲଟା କରିଦେବେ ରୋହିତ । ପୁଣି ରୋହିତଙ୍କୁ ତାଗିଦା କରୁଥିଲା- ଭଉଣୀମାନେ ଯେମିତି ପରସ୍ପରର ଶାଢ଼ୀ ନ ଦେଖନ୍ତି । କାହିଁକି ନା ସିଏ ଜାଣିଛି ନିଜ ଶାଢ଼ୀ ଠାରୁ ଅନ୍ୟର ଶାଢ଼ୀ ସାଧାରଣତଃ ବେଶି ଭଲ ଲାଗେ । ରିନି ଜାଣିଥିଲା ଯେ ସିଏ ପଠାଉଥିବା ଶାଢ଼ୀ ଗୁଡ଼ାକ ତାର ଭଉଣୀମାନଙ୍କ ମନକୁ ପାଇବ । ତଥାପି ତାର ଉଦାରତା ଦେଖାଇବା ପାଇଁ ରୋହିତଙ୍କୁ କହିଥିଲା, ' ଯଦି ସେମାନଙ୍କ ମନକୁ ନଯିବ ତାହେଲେ ଫେରାଇଆଣିବ । ସିଏ ଏ ସବୁ ଶାଢ଼ୀ ବଦଳାଇ ଅଲଗା ଶାଢ଼ୀ ଆଣିପାରିବ । କାରଣ ଦୋକାନୀ ମାନେ ତାର ଖୁବ୍ ଚିହ୍ନା ।' ରୋହିତ ଆଜି କଟକ ଯାଉଛନ୍ତି । କାଲି ଶାଳୀ ଚିନି ଘରେ ଓହ୍ଲେଇବେ । ସେଠୁ ମିଟିଂ ଯିବେ । ପରେ ରାତିରେ କୁନିନାନୀ ଘରକୁ ଯିବେ । ସେଠି ରାତିଟା ରହିବେ । ତା ପରଦିନ ନିଜର କିଛି ବ୍ୟକ୍ତିଗତ କାମ ପାଇଁ ଭୁବନେଶ୍ୱର ଯିବେ ଓ ରହିବେ ମିନିନାନୀଙ୍କ ଘରେ ଏବଂ କାମସାରି ସେହି ରାତିରେ ପୁଣି ରାଉରକେଲା ଫେରି ଆସିବେ ତପସ୍ୱିନୀରେ । ଫେରିବା ଟିକେଟ ମଧ୍ୟ ହେଇସାରିଛି ।

ରୋହିତଙ୍କୁ ଗେଟ ପାଖରେ ବିଦାୟ ଦେଇ ଆସିଲା ପରେ ପୁଅ, ଝିଅ ଦୁଇଜଣଙ୍କୁ ଖାଇବାକୁ ଦେଇ, ନିଜେ ଖାଇ ଶୋଇବା ଘରକୁ ଆସିଲା ରିନି । ମନ ଖାଲି ତାର ଉଚ୍ଚାଟ ହେଉଥାଏ ଫୋନ୍ କରି ନାନୀମାନଙ୍କୁ ଓ ସାନ ଭଉଣୀକୁ କହି ଦେବାକୁ ସେମାନଙ୍କ ଶାଢ଼ୀ ବିଷୟରେ । କାହିଁକି ନା ଯଦିଓ ସେମାନେ ଜାଣିଛନ୍ତି ରୋହିତ ଯାଉଛନ୍ତି, ରିନି ତାଙ୍କର ହାତରେ ଶାଢ଼ୀ ପଠାଉଛି ବୋଲି ଜାଣିନାହାନ୍ତି । ସେମାନଙ୍କୁ ସରପ୍ରାଇଜ ଦେବ ବୋଲି ଏ କଥା ସିଏ କିଛି କହିନି । ରିନି ମନେ ମନେ ଭାବୁ ଥାଏ, କାଲି ଏତେବେଳକୁ ଚିନି ଓ କୁନିନାନୀ ଶାଢ଼ୀ ପାଇଁ ଖୁସି ହୋଇ ଫୋନ୍ କରିବେ ନିଶ୍ଚୟ । ସେତେବେଳେ ରିନି କହିବ ସିଏ କେତେ ଦୋକାନ ବୁଲି ବୁଲି, କେତେ ବାଛି ବାଛି ସେମାନଙ୍କ ପାଇଁ ଶାଢ଼ୀ କିଣିଛି । ସତରେ ରିନି କେବେ ବି ପ୍ରଥମ ଦୋକାନରୁ ଶାଢ଼ୀ କିଣେନି । ଯଦିଓ ପ୍ରଥମ ଦୋକାନରେ ଶାଢ଼ୀଟା ପସନ୍ଦ

ହୋଇଗଲା  ତେବେ ବି ଆଉ ଦୁଇ ଚାରିଟା ଦୋକାନ ସିଏ ଦେଖିବ ଇ ଦେଖିବ । କାଳେ ତା ଠାରୁ ଭଲ ଶାଢ଼ୀ ଆଉ କେଉଁ ଦୋକାନରେ ଥିବ । ଗୋଟେ ଦିନ ଖାଲି ଦୋକାନ ବୁଲି ବୁଲି ଶାଢ଼ୀ ଦେଖିବ ଓ ରାତିଟା ଦେଖିଥିବା ଶାଢ଼ୀ ଭିତରୁ କେଉଁଟା  କିଣିବ ବୋଲି ଭାବିସାରିଲା ପରେ ପରଦିନ ଯାଇ ଶାଢ଼ୀଟା କିଣିକି ଆଣିବ । କେବେକେବେ ଏମିତି ବି ହେଇଛି ଯେ ଦେଖିଥିବା ଶାଢ଼ୀଟା ବିକ୍ରି  ହେଇଯାଇଥାଏ । ସେଥିପାଇଁ ପ୍ରାୟ ସିଏ ଦୋକାନୀକୁ କହିଥାଏ ଗୋଟେ ଦିନ ଶାଢ଼ୀଟା ବିକ୍ରି ନ କରି ରଖିବା ପାଇଁ । ଆଉ ଯଦିବା କେବେ କେମିତି ପ୍ରଥମ ଦୋକାନରୁ ଶାଢ଼ୀ କିଣିଛି, ତାହେଲେ ତା ପରଦିନ ନିଶ୍ଚୟ ଯାଏ ସେ ଶାଢ଼ୀ ବଦଳାଇ ଅନ୍ୟ ଶାଢ଼ୀ ଆଣିବା ପାଇଁ ।

ଏଇ ଶାଢ଼ୀ ଫେରାଫେରି କଲେ ରୋହିତ ଖୁବ୍ ରାଗନ୍ତି । ସେଥିପାଇଁ ରିନି ସାଂଗରେ ଶାଢ଼ୀ କିଣିବାକୁ ଥିଲେ ସିଏ ଯାଆନ୍ତି ନାହିଁ । ଶାଢ଼ୀ ବାଛିବାକୁ ଡେରିହେଲେ ସେହି ଦୋକାନରେ ହିଁ ବିରକ୍ତ ହେବେ ଏତେ ସମୟ ନଷ୍ଟ ହେଉଛି ବୋଲି କହି । ତେଣୁ ରିନି ସବୁବେଳେ ତା ସାଂଗମାନଙ୍କ ସାଂଗରେ ଯାଏ ବଜାର । ରୋହିତ କଅଣ ଜାଣିବେ ଶାଢୀ କିଣିଲା ବେଳେ କେତେ କଥା ଭାବିବାକୁ ପଡେବୋଲି । ପ୍ରଥମେ ଶାଢ଼ୀ କିଣିଲେ ସେଇ ରଂଗର ସାୟା ଅଛି କି ନାହିଁ  । ତା ଛଡା ଅନ୍ୟ ସାଂଗମାନଙ୍କର ସେମିତି ଶାଢ଼ୀ ଯେମିତି ନଥିବ, ଇତ୍ୟାଦି ଇତ୍ୟାଦି । ଅବଶ୍ୟ ରିବେଟ୍ ଚାଲିଲାବେଳେ ସିଏ ଏ ସବୁ ଦେଖେନି । ଦୁଇ ନାନୀ ଓ ରିନିର ଏଇ ଶାଢ଼ୀ ତିନିଖଣ୍ଡ କିଣିବାକୁ ତାକୁ କଣ କମ୍ ପରିଶ୍ରମ କରିବାକୁ ପଡ଼ିଛି ? ବଡ ନାନୀ ସବୁବେଳେ ଗାଢ଼ ରଂଗର  ଶାଢ଼ୀ ପିନ୍ଧନ୍ତି । ସେ ବେଶ୍ ଲମ୍ବା ଓ ଗୋରା ଥିବାରୁ ତାକୁ ସେ ଶାଢ଼ୀ ସବୁ ଭଲ ମାନେ । ଫିକା ରଂଗ ପିନ୍ଧିବାକୁ ମୋଟ୍ରେ ଭଲ ପାଆନ୍ତିନି । ସବୁବେଳେ ସଜେଇ ଗୁଜେଇ ହେଇ ରହନ୍ତି । ଫିଲ୍ମଷ୍ଟାରି ରେଖା ଭଳିଆ ବହୁତ ଗର୍ଜିୟସ । ଏଇ ଟମାଟୋ ରଂଗର ଶାଢ଼ୀଟି ରିନି ପ୍ରଥମ ଦେଖିଥିଲା ଯେତେବେଳେ ତାର ଜଣେ ସାଂଗ ପିନ୍ଧିଥିଲା । ସେ ଶାଢ଼ୀଟି ଦେଖି ଲାଗିଥିଲା ସତେ ଯେମିତି ମିନି ନାନୀଙ୍କ ପାଇଁ ଶାଢ଼ୀଟି ତିଆରି ହେଇଛି । ସାଂଗକୁ ପଚାରିଥିଲା କେଉଁଠାରୁ କିଣିଲା ଏତେ ସୁନ୍ଦର ଶାଢ଼ୀ । ସେଠୁ ଜାଣିବାକୁ ପାଇଥିଲା ଷୋହଳ ନମ୍ବର ସେକ୍ଟରରେ କେଉଁ ଏକ ଭଦ୍ରମହିଳା ଘରେ ଶାଢ଼ୀ ବିକ୍ରି କରନ୍ତି ଏବଂ ଠିକ୍ ଏମିତିଆ ଶାଢ଼ୀଟିଏ ତାଙ୍କ ପାଖରେ ଅଛି । ସେ କଥା ଜାଣିଲା ପରେ ଆଉ କି ତର ଥାଏ ରିନିର ! ତା ପରଦିନ ଷୋହଳନମ୍ବର ଯାଇ ସେଇ ଶାଢ଼ୀଟିକୁ ମିନିନାନୀଙ୍କ ଲାଗି କିଣି ଆଣିଥିଲା ।  କୁନିନାନୀ କିନ୍ତୁ ହାଲ୍କା ରଂଗର ସୂତାଶାଢ଼ୀ ପିନ୍ଧନ୍ତି । ତାଙ୍କ ପାଇଁ ସମୁଦ୍ର ନୀଳ ରଂଗର ବେଙ୍ଗଲ ହ୍ୟାଣ୍ଡଲୁମ୍ ଶାଢ଼ୀଟି କୋଏଲ ନଗରର 'ଟମନା'ରୁ ରିନି କିଣିଛି ।

ଦୁଇଥର ଦୋକାନ ଯିବା ପରେ ବି କୌଣସି ଶାଢ଼ୀ ମନକୁ ପାଇନଥିଲା । ତୃତୀୟ ଥର ଯାଇ ଏ ଶାଢ଼ୀଟି ଦେଖି କିଣିବ କି ନ କିଣିବ ଭାବୁଥିଲା । କିନ୍ତୁ ଅନ୍ୟ ଜଣେ ଭଦ୍ର ମହିଳା ଯେତେବେଳେ ଏ ଶାଢ଼ୀଟିକୁ ବାଛିଥିଲେ ସେତେବେଳେ ରିନି ନିଶ୍ଚିତ ହୋଇଯାଇଥିଲା ଏ ଶାଢ଼ୀଟି ସିଏ ନେବ । ତେଣୁ କହିଥିଲା ଯେ ସିଏ ପୂର୍ବରୁ ଏ ଶାଢ଼ୀଟି ବାଛିକି ରଖିଛି ଓ ତାକୁ ନେଇ ଆସିଥିଲା । ସେ ଭଦ୍ରମହିଳାଙ୍କ ମୁହଁଟି ଶୁଖି ଯାଇଥିଲା ଅବଶ୍ୟ, କିନ୍ତୁ ରିନି ଖୁବ୍ ଖୁସି ହେଇଥିଲା ଭଲ ଶାଢ଼ୀଟିଏ ପାଇଗଲା ବୋଲି । ଶେଷରେ ଚିନିର ଶାଢ଼ୀଟି କିଣିଥିଲା 'ଇନ୍ଦିରା'ରୁ । ଅବଶ୍ୟ 'ଇନ୍ଦିରା' ଯିବାପାଇଁ ରୋହିତଙ୍କ ସାହାଯ୍ୟ ମାଗିଥିଲା । ନ ହେଲେ ଏତେ ଦୂରଯିବା ପାଇଁ ଅସୁବିଧା ହୋଇଥାନ୍ତା । ଶାଳୀ ପାଇଁ ଶାଢ଼ୀ କିଣାହେବ ବୋଲି ରୋହିତ ଗାଡ଼ିରେ ନେଇ ଯାଇଥିଲେ । ଚିନିର ଶାଢ଼ୀଟି ସବୁଠାରୁ ଦାମୀ । ଆଜିକାଲି ଚିନି ଗୋଟେ ବେସରକାରୀ ସ୍କୁଲରେ ଶିକ୍ଷୟିତ୍ରୀ ଅଛି । ଏ ଶାଢ଼ୀଟି ଦାମୀ ହେଲେବି ସ୍କୁଲ ପିନ୍ଧି ଯାଇପାରିବ ।

ରିନି ଜାଣିଛି ମିଳିବା ଶାଢ଼ୀ ପସନ୍ଦ ହେବା ଖୁବ୍ ବିରଳ । କିନ୍ତୁ ସିଏ ଜାଣିଥିଲା ଯେ ସିଏ କିଣିଥିବା ଶାଢ଼ୀ ସବୁବେଳେ ପସନ୍ଦଯୋଗ୍ୟ । ମିଳିବା ଶାଢ଼ୀରୁ ରିନିର ମନେପଡ଼ିଲା ଆଗବର୍ଷ ମିନିନାନୀଙ୍କ ପୁଅ ବାହାଘର କଥା । ଗଲା ବର୍ଷ ମିନିନାନୀଙ୍କ ପୁଅ ବିନୁ ବାହାଘର ଯେମିତି ଠିକ୍ ହେଲା, ଏମାନଙ୍କର ଚିନ୍ତା ପଡ଼ିଗଲା ମାଉସୀ ଶାଶୁ ଶାଢ଼ୀ କେମିତିଆ ଆସିବ? ମିନିନାନୀ ଆଗରୁ ଜାଣିଯାଇଥିଲେ ଯେ ସମୁଦି ଘର ମାଉସୀ ଶାଶୁ, ପିଉସି ଶାଶୁମାନଙ୍କ ପାଇଁ ବାରଶହରୁ ପନ୍ଦରଶହ ଟଙ୍କା ଭିତରେ ଶାଢ଼ୀ ଦେବେ । ଏକଥା ଏଇଥି ପାଇଁ ଜଣାପଡ଼ିଥିଲା ଯେହେତୁ ସମୁଦୁଣୀ ଥିଲେ ମିନିନାନୀଙ୍କ ବଡ ଜା'ଙ୍କ ଭଉଣୀ । ତାପରେ ତିନି ଭଉଣୀ ଲାଗିଗଲେ ମିନିନାନୀଙ୍କ ପଛରେ ସମୁଦି ଘରକୁ ଖବର କରିବାକୁ-ପିଉସୀ ଶାଶୁ ଙ୍କୁ ଶାଢ଼ୀ ଯାହା ଦେବେ ଦିଅନ୍ତୁ କିନ୍ତୁ ମାଉସୀ ଶାଶୁ ମାନଙ୍କୁ ସମ୍ବଲପୁରୀର ସୂତା ପଶାପାଲି ଶାଢ଼ୀ ଯେମିତି ଦିଅନ୍ତି । ମିନିନାନୀ କିନ୍ତୁ ବାହାଘର ପାଇଁ ବ୍ୟସ୍ତ ରହି ସମୁଦି ଘରକୁ କିଛି ଖବର ପଠାଇ ପାରି ନଥିଲେ । ତେଣୁ ମାଉସୀ ଶାଶୁ ମାନଙ୍କ ପାଇଁ ଆସିଥିଲା ତିନୋଟି ପିଓର ସିଲ୍କ୍ ଶାଢ଼ୀ । ସେ ଶାଢ଼ୀ ଦେଖି ସମସ୍ତଙ୍କ ମନ ଖଟା ହେଇଯାଇଥିଲା । କାହିଁକିନା ତିନୋଟି ଯାକ ଶାଢ଼ୀର ରଂଗ ଥିଲା ଧୂସର । ସେମାନେ ମିନିନାନୀଙ୍କୁ କହିଲେ ଏ ଶାଢ଼ୀ ସବୁ ବେଢାରରେ ଦେଇ ସେମାନଙ୍କର ପାଇଁ ଅନ୍ୟ ଶାଢ଼ୀ କିଣାଇଦେବାକୁ । 'କିନ୍ତୁ ଏତେ ଦାମୀ ଶାଢ଼ୀ ଆଉ କାହାକୁ ଦେବି'ବୋଲି କହି ମିନିନାନୀ ବାଧ୍ୟ କରି ସେମାନଙ୍କୁ ହଜାରେ ଲେଖାଏଁ ଟଙ୍କା ଦେଇଥିଲେ ନିଜ ମନ ମୁତାବକ ଆଉ ଖଣ୍ଡିଏ ଲେଖାଏଁ ଶାଢ଼ୀ କିଣିବାକୁ ।

ମାସେ ଖଣ୍ଡେ ସେ ଶାଢ଼ୀଟିକୁ ସେମିତି ରଖିଲା ପରେ ଦିନେ ରିନି ଜଣଙ୍କ ଘରକୁ ତାଙ୍କ ମା'ଙ୍କ ଶ୍ରାଦ୍ଧରେ ପିନ୍ଧିକି ଯାଇଥିଲା । ଆଉ ଠିକ୍ ପରଦିନ ଚିନିଠାରୁ ଫୋନ୍ ପାଇଲା । ଚିନି ଖୁସି ହୋଇ କହିଥିଲା କେମିତି ତା ଶାଢ଼ୀରେ ଭୂଲରେ ଯେଉଁ ଦୋକାନରୁ କିଣା ହୋଇଥିଲା ସେ ଦୋକାନର ଷ୍ଟିକର୍‌ଟି ଲାଗିରହି ଥିଲା । ତେଣୁ ସିଏ କାଲି ଭୁବନେଶ୍ୱର ଯାଇ ସେ ଦୋକାନୀକୁ ବହୁତ ଅନୁନୟ ବିନୟ ହୋଇ ସେ ଶାଢ଼ୀ ବଦଳାଇ ନିଜ ମନ ପସନ୍ଦର ଆଉ ଗୋଟେ ଶାଢ଼ୀ ଆଣିଛି । ଡେରି ହେଇଛି ବୋଲି ଦୋକାନୀ ଶହେଟଙ୍କା ଫେରାଇବା କଥା ଥିଲେବି ଫେରାଇଲା ନାହିଁ । ଚିନି ଆଉ ବି କହିଲା, ଆସନ୍ତାକାଲି ଯାଇ କୁନିନାନୀଙ୍କ ଶାଢ଼ୀଟା ବଦଳାଇ ଅନ୍ୟ ଶାଢ଼ୀ ସିଏ ନେଇ ଆସିବ, ଯେତେଟଙ୍କା କଟିଲେ ପଛେ କଟୁ । ରିନି ନିଜ ଭାଗ୍ୟକୁ ନିନ୍ଦାକରି ରହିଲା । ସିଏ ତ ଶାଢ଼ୀଟି ପିନ୍ଧିସାରିଥିଲା ଆଉ କଣ ବା କରି ପାରିଥାଆନ୍ତା ?

ଏ ଭିତରେ ଦୁଇଦିନ ବିତିଯାଇଥିଲେ ବି କିଛି ଫୋନ୍ ଆସିନି । ରୋହିତ କଣ ଭୁଲିଗଲେକି ଶାଢ଼ୀ ଦେବାକୁ ? ନହେଲେ ହଜାଇ ଦେଲେ କି ? ଫୋନ୍ ଲାଇନ୍ କଅଣ ଖରାପ ଅଛି ? ଚିନିର ଫୋନ୍ ତ ଠିକ୍ ଅଛି ତ ? ରିନି ର ଇଚ୍ଛା ହେଲା ଫୋନ୍ କରି ପଚାରିବ । କିନ୍ତୁ ଅଭିମାନ କରି ପଚାରିଲାନି । ଶାଢ଼ୀ ବି ଦେବ, ଆହୁରି ଫୋନ୍ ବି କରିବ ? ପୁଣି ଭାବିଲା, ତାହେଲେ ଶାଢ଼ୀ କଣ ସେମାନଙ୍କର ପସନ୍ଦ ହେଲାନି । ଅସମ୍ଭବ । ଏମିତି ଭାବୁଭାବୁ ରିନି କୁ ନିଦ ଆସିଗଲା ।

ତା ପରଦିନ ପାହାନ୍ତିଆରୁ ରିନିର ନିଦ ଭାଂଗିଗଲା । ସକାଳୁ ପୁଅ, ଝିଅ, ଦୁଇଜଣ ଟିଉସନ୍ ପାଇଁ ଚାଲିଗଲା ପରେ ରିନି ଖାଲି ଘରକୁ ବାହାର ହେଉ ଲାଗିଲା କେତେବେଳେ ରୋହିତ ପହଞ୍ଚିବେ ବୋଲି । ରୋହିତ ଗେଟ୍ ପାଖରେ ପହଞ୍ଚୁ ପହଞ୍ଚୁ ପଚାରି ବସିଲା ଶାଢ଼ୀକଥା । ଟେମ୍ପୋ ବାଲାକୁ ଟଙ୍କା ଦେଉ ଦେଉ ରୋହିତ ମୁରୁକି ହସି କହିଲେ-ଘରକୁ ଚାଲ, ସବୁ କହିବି ।

ଘର ଭିତରକୁ ଆସି ଉପହାସ ଭରା କଣ୍ଠରେ କହିଲେ, ବାହାର ବି ଶାଢ଼ୀ ପସନ୍ଦ ହେଲାନି, ତେଣୁ ଫେରାଇ ଆଣିବାକୁ ପଡ଼ିଛି । ଚିନି କହିଲା ସିଏ ଆଜିକାଲି ସ୍କୁଲ ଯାଉଛି । ସେଠି ସମସ୍ତେ ପ୍ରତ୍ୟେକ ଦିନ ନୂଆ ନୂଆ ଶାଢ଼ୀ ପିନ୍ଧି ଆସନ୍ତି । ତେଣୁ ଏଇ ଦାମୀ ଶାଢ଼ୀଟି ବଦଳାଇ ସେଇ ଟଙ୍କାରେ କମ ଦାମ୍‌ର ଅନ୍ୟ ଦୁଇଟି ଶାଢ଼ୀ ପଠାଇବା ପାଇଁ । ଆଉ କୁନିନାନୀ କହିଲେ ଯଦିଓ ଶାଢ଼ୀଟି ଚମତ୍କାର ହୋଇଛି, କିନ୍ତୁ ତାଙ୍କର ଯା ଭିତରେ ଏଇ ରଂଗର

ଦୁଇଟି ଶାଢ଼ୀ ହୋଇଗଲାଣି । ତେଣୁ ଏ ଶାଢ଼ୀ ପିନ୍ଧିଲେ କେହି ହଠାତ୍ ଜାଣିପାରିବେନି ନୂଆ ଶାଢ଼ୀବୋଲି । ସେଥିପାଇଁ ସିଏ କହିଛନ୍ତି ଏଇଟିକୁ ବଦଳାଇ ପିଙ୍କ୍ ବା ପିଚ୍ ରଂଗର ଶାଢ଼ୀଟିଏ ପଠାଇବା ପାଇଁ । ବଡ଼ ମିନିନାନୀ ତାଙ୍କ ଶାଢ଼ୀ ଦେଖି କହିଲେ ଶାଢୀଟା ତ ପୂରା ଅନନ୍ୟ କିନ୍ତୁ ତାଙ୍କ ବୋହୂ ଆସିବା ପରଠାରୁ ସିଏ ଆଉ ଗାଢ଼ ରଂଗର ଶାଢ଼ୀ ପିନ୍ଧୁ ନାହାନ୍ତି ।

ଗାଢ଼ ରଂଗର ଶାଢ଼ୀ ପିନ୍ଧୁନାହାନ୍ତି ? ଆଶ୍ଚର୍ଯ୍ୟ ହୋଇ ପ୍ରଶ୍ନକଲା ରିନି । ରୋହିତ କହିଚାଲିଲେ-ଥରେ କୁଆଡେ ବୋହୂକୁ ସାଂଗରେ ଧରି ନାନୀ ତାଙ୍କ ସାଙ୍ଗ ଘରକୁ ଯାଇଥିଲେ । ନାନୀ ପିନ୍ଧିଥିଲେ ନିଆଁ ରଂଗର ଶାଢୀ ଓ ତାଙ୍କ ବୋହୂ ପିନ୍ଧିଥିଲା ଧୂଳି ରଂଗର ଶାଢ଼ୀ । ନାନୀଙ୍କ ଦୁର୍ଯୋଗକୁ ସେଠି ଜଣେ ବଂଗୀୟ ଭଦ୍ରମହିଳା ଥିଲେ । ସିଏ ମନ୍ତବ୍ୟ କରିଥିଲେ, ଓଡ଼ିଆ ଘରେ କ'ଣ ଶାଶୁମାନେ ଗାଢ଼ ରଂଗର ଓ ବୋହୂମାନେ ହାଲ୍କା ରଂଗର ଶାଢ଼ୀ ପିନ୍ଧନ୍ତି ? ମିନିନାନୀଙ୍କୁ କଥାଟି ବଡ ବାଧି ଯାଇଥିଲା । ଆଉ ସେହିଦିନଠାରୁ ସିଏ ଆଉ ଗାଢ଼ ରଂଗର ଶାଢ଼ୀ ପିନ୍ଧୁନାହାନ୍ତି । ଆଉ ଖାସ୍ ସେଇଥିପାଇଁ କହିଛନ୍ତି ଏ ଶାଢ଼ୀଟି ବଦଳାଇ ଯେ କୌଣସି ଫିକା ରଂଗର ଶାଢ଼ୀଟିଏ ପଠାଇବା ପାଇଁ ।

ରିନି ସେତେବେଳକୁ ରାଗରେ ପାଚି ଗଲାଣି । କେଜାଣି କାହିଁକି ସବୁ ରାଗତକ ଆସି ଠୁଳ ହେଲା ରୋହିତଙ୍କ ଉପରେ । କହିଲା 'ତାହେଲେ କୁନିନାନୀଙ୍କ ଶାଢ଼ୀଟି ମିନି ନାନୀଙ୍କୁ ଦେଇ ଦେଲନି ?'

ସାଂଗେ ସଂଗେ ରୋହିତ ଜବାବ ଦେଲେ-'ତୁମେ ତ ମନା କରିଥିଲ କାହା ଶାଢୀ କାହାକୁ ନ ଦେଖାଇବାକୁ ।' ଶାଢ଼ୀ ତିନିଖଣ୍ଡ ଆଲମିରାରେ ରଖୁରଖୁ ରିନି କହିଲା 'ଠିକ୍ ଅଛି, ଏ ଶାଢୀ ତିନି ଖଣ୍ଡ ବଦଳା ହେବନି । ମୁଁ ପିନ୍ଧିବି ।'

□□□

# ତନୟା

ଆରୋଗ୍ୟ ନର୍ସିହୋମକୁ ଦେଖିଲା ପରେ ମିତା ନିଜର ନିଷ୍ପତ୍ତି ଶୁଣାଇଥିଲା ଯେ ବାପାଙ୍କ କାଟାରାକ୍ଟ ଅପରେସନ ଏଠି ନ ହେଇ ହେବ ରାଉରକେଲାରେ ଯେଉଁଠି ମିତା ଓ ମିହିର କାମ କରନ୍ତି । ଆସନ୍ତା କାଲି ବାପା ଆରୋଗ୍ୟ ନର୍ସିହୋମ୍‌ରେ ଭର୍ତ୍ତି ହୋଇଥାଆନ୍ତେ ଓ ତା ପରଦିନ ବାପାଙ୍କର ମୋତିଆ ବିନ୍ଦୁ ଅପରେସନ ହୋଇଥାଆନ୍ତା । ସେଇଥିପାଇଁ ଛୁଟି ନେଇ ଡାକ୍ତର ଝିଅ ଜୋଇଁ ମିତା ଓ ମିହିର କଟକ ଆସିଛନ୍ତି । ସେମାନେ ପାହାନ୍ତିଆରୁ ନିଜ ଗାଡ଼ିରେ ରାଉରକେଲାରୁ ବାହାରି ଏଠି ପ୍ରାୟ ଦିନ ଦେଢ଼ଟା ବେଳେ ପହଞ୍ଚିଛନ୍ତି । ସାଂଗରେ ଝିଅ ଟିନା ଓ ପୁଅ ମିଟୁ । ସଂଧ୍ୟାରେ ମିତା ଓ ମିହିର ଆରୋଗ୍ୟ ନର୍ସିହୋମ ଦେଖିଯାଇଥିଲେ । ସେଠାକାର ଓଟି, ୱାର୍ଡ, କ୍ୟାବିନ୍ ଆଦି ସେମାନଙ୍କ ମନକୁ ଜମାରୁ ପାଇନଥିଲା ।

ମିତାର ଏ ସଂପର୍କରେ ନିଷ୍ପତ୍ତି ଶୁଣି ବାପା, ବୋଉ, ବଡ ଭାଇନା, ପୁରୀରୁ ଆସିଥିବା ସାନ ଭାଇନା ଓ ଭୁବନେଶ୍ୱର ରୁ ଆସିଥିବା ସାନନାନୀ ଆଦି ପରିବାରର ସବୁ ସଦସ୍ୟ ବ୍ୟସ୍ତ ହୋଇପଡିଲେ ଓ ମିତା କୁ ବୁଝାଇବାରେ ଲାଗିଲେ-ଏଇଟା ତ ଏମିତି କିଛି ବଡ଼ ଅପରେସନ ନୁହେଁ । ଏଠିକାର ଆଖି ସର୍ଜନ ଡାକ୍ତର ଦାଶଙ୍କ ହାତ ବି ଖୁବ୍ ଭଲ । ତା ଛଡା ଏଠି ସମସ୍ତେ ଅଛନ୍ତି । ରାଉରକେଲାରେ ଅପରେସନ ହେଲେ ସେଠାକୁ ତ ଆଉ ସବୁ ଘରଲୋକ ଯାଇପାରିବେନି । ମିତା ଯୁକ୍ତି କଲା, ଲୋକବାକ ର ସୁବିଧା ଥିଲେ କ'ଣ ହେବ? ଏଠିକାର ଓଟି ଜୀବାଣୁମୁକ୍ତ ନୁହେଁ । ସେମାନଙ୍କର ରାଉରକେଲା ଡାକ୍ତରଖାନା ଖୁବ୍ ପରିଷ୍କାର ପରିଚ୍ଛନ୍ନ ଏବଂ ସେଠାର ଆଖି ସର୍ଜନ ଡାକ୍ତର ମିଶ୍ର ବେଶ୍ ଦକ୍ଷ । ତା ପରେ ରାତି ଅଧଯାଏ ବାପାଙ୍କ ଅପରେସନ ନେଇ ଚାଲିଲା ଘରେ ଯୁକ୍ତିତର୍କ କଥା କଟାକଟି । ମିହିର କିନ୍ତୁ ଏ ଆଲୋଚ଼ନା ରେ ଏତେ ସଂଶ୍ଳିଷ୍ଟ ହୋଇପାରୁନଥାନ୍ତି । ଦୁଇ ଭାଇନା ମିହିରଙ୍କୁ ତାଙ୍କ ମତ ପଚାରିବାରୁ ସିଏ କହିଲେ ରାଉରକେଲାରେ ଅପରେସନ କରିବାଟା ନିରାପଦ । ତଥାପି ଭାଇମାନେ ରାଜି ହୋଇ ପାରୁନଥାନ୍ତି ମିତା କଥାରେ । ଶେଷରେ ଯେତେବେଳେ ମିତା କହିଲା-ଅପରେସନ ଏଠି କରାଅ, କିନ୍ତୁ ପରେ ବାପାଙ୍କ ଆଖିର କିଛି ଅସୁବିଧା ହେଲେ ମତେ ଦୋଷ ଦେବନି । ସେତେବେଳେ ଦୁଇ ଭାଇନା ଓ ନାନୀ ଡରିଯାଇ ମିତା କଥା ମାନିଯାଇଥିଲେ । ବାପା ବୋଉ କିନ୍ତୁ କୁଣ୍ଠିତ ହେଉଥାଆନ୍ତି । ଝିଅ ଘରେ ରହି ଅପରେସନ ହେବାଟା ସେମାନଙ୍କୁ ମାଡ଼ି ପଡୁଥାଏ । ତେଣୁ ବୋଉ କହିବାକୁ ଲାଗିଲା-ସେଠି ଅପରେସନ

ହେଲେ ମିହିର ଓ ମିତାଙ୍କୁ ବହୁତ ଖର୍ଚ୍ଚାନ୍ତ ହେବାକୁ ପଡିବ ଆଉ ହୁଏତ ସମୁଦି ବି ଖରାପ ଭାବିପାରନ୍ତି । ବୋଉର କଥା ଶୁଣି ମିତା ବୋଉକୁ ବୁଝାଇବାକୁ ଲାଗିଲା ଯେହେତୁ ମିତା ସେ ଡାକ୍ତରଖାନାରେ କାମ କରୁଛି, ଏବଂ ବାପାଙ୍କ ଚିକିତ୍ସାପତ୍ର ଅଛି ଓ ବାପା ସେଠାରେ ଚିକିତ୍ସା ପାଇବା ପାଇଁ ହକ୍‌ଦାର । ତେଣୁ ବାପାଙ୍କର ଅପରେସନ ପାଇଁ ସେମାନଙ୍କୁ ଗୋଟେ ନୂଆପଇସା ବି ଖର୍ଚ୍ଚ କରିବାକୁ ପଡ଼ିବ ନି । ଆଉ ରହିଲା ଶ୍ୱଶୁରଙ୍କର ଖରାପ ଲାଗିବା କଥା । ସିଏ କାହିଁକି ଖରାପ ଭାବିବାକୁ ଯିବେ ? ତାଙ୍କ ନିଜର ତ ହାର୍ଣ୍ଣିଆ ଓ ଗଲ୍‌ଷ୍ଟୋନ୍ ଅପରେସନ ସେଠାରେ ହେଇଛି । ମିତାର ଅଟଳ ଜିଦି ଓ ଅକାଟ୍ୟ ଯୁକ୍ତି ଆଗରେ ଶେଷରେ ବାପା, ବୋଉଙ୍କୁ ହାର ମାନିବାକୁ ପଡିଥିଲା ଓ ଠିକ୍ କରାହେଲା ବାପାଙ୍କ ଅପରେସନ ପାଇଁ ଛୁଟି ନେଇ ଆସିଥିବା ମିତା ଓ ମିହିର ଛୁଟି ନଷ୍ଟ ନକରି କାଲି ପିଲାମାନଙ୍କୁ ନେଇ ବରହମ୍‌ପୁର ଯିବେ ମିହିରଙ୍କ ବାପା, ମାଙ୍କ ପାଖକୁ । ସେଠି ଚାରିଦିନ ରହି ଫେରିବାବେଳେ ବାପାଙ୍କୁ ସାଂଗରେ ରାଉର୍‌କେଲା ନେଇ ଯିବେ । ସେଠାକାର ଜଳବାୟୁ ସାଂଗରେ ବାପା ଗୋଟେ ସପ୍ତାହ ଅଭ୍ୟସ୍ତ ହେଲାପରେ ତା ପର ସପ୍ତାହରେ ବାପାଙ୍କ ଅପରେସନ ହେବ । ଅପରେଶନ୍ ପୂର୍ବଦିନ କଟକରୁ ବୋଉ ଓ ଦୁଇ ଭାଇନାଙ୍କ ମଧ୍ୟରୁ ଯିଏ ହେଲେ ରାଉରକେଲ ଯିବେ, ବାପାଙ୍କ ଅପରେସନ ପରେ ସିଏ ଡାକ୍ତରଖାନାରୁ ଛୁଟି ହେଲେ ବୋଉ ଓ ଭାଇନା କଟକ ଫେରିଆସିବେ । ବାପା ରାଉରକେଲାରେ ଆଉ ଦେଢ଼ ମାସ ରହିବେ ଚୂଷମା ହେଲା ପର୍ଯ୍ୟନ୍ତ । ପରେ ଘରୁ ଯିଏ ଜଣେ ଯାଇ ବାପାଙ୍କୁ କଟକ ନେଇ ଆସିବେ । ଏ ସବୁ ଶୁଣି ଟିନା ଓ ମିଟୁ ଖୁସି ହେଲେ ଯେ ଖରା ଛୁଟି ଟା ବଢ଼ିଆରେ କଟିବ ।

ତା ପରଦିନ ମିହିର ଓ ମିତା ପିଲାମାନଙ୍କୁ ନେଇ ବରହମ୍‌ପୁର ଗଲେ । ଗଲାବେଳେ ବାପା ବାରମ୍ବାର ମିହିରଙ୍କୁ କହୁଥାନ୍ତି-ସମୁଦିଙ୍କୁ କହିଦେବେ ମୋର ଆଖି ଅପରେସନ ରାଉରକେଲାରେ ହେବ । ବାପା ଯେ ପରୋକ୍ଷରେ ଶ୍ୱଶୁରଙ୍କର ଅନୁମତି ମାଗୁଛନ୍ତି ଏ କଥା ମିତା ଠିକ୍ ବୁଝିପାରୁଥିଲା ଓ ମନେ ମନେ ରାଗୁଥିଲା ବାପାଙ୍କ ଉପରେ । ମିତା ଯେ ଆଜି ଡାକ୍ତର ହୋଇ ଚାକିରୀ କରି ନିଜ ଗୋଡରେ ନିଜେ ଠିଆ ହୋଇଛି-ତା କେବଳ ବାପାଙ୍କ ପାଇଁ । ବାପାଙ୍କର ବହୁତ ଇଚ୍ଛା ଥିଲା ଅନ୍ତତଃ ଗୋଟିଏ ସନ୍ତାନ ତାଙ୍କର ଡାକ୍ତରୀ ପଢୁ । ବାପାଙ୍କର ଜ୍ୟେଷ୍ଠ ସନ୍ତାନ ବଡନାନୀ ସବୁଠାରୁ ଭଲ ପଢୁଥିଲେ, କିନ୍ତୁ ପରେ ସିଭିଲ ସର୍ଭିସ୍ ପରୀକ୍ଷା ଦେବେ ବୋଲି ମେଡ଼ିକାଲ୍ କଲେଜରେ ନାଁ ଲେଖାଇନଥିଲେ । ସେ ପରୀକ୍ଷା ଦେବାର ବୟସ ହେବା ଆଗରୁ ଆଇ.ପି.ଏସ୍. ଜୋଇଁ ପାଇ ବାପା ତାଙ୍କର ବାହାଘର କରାଇଦେଇଥିଲେ । ଦ୍ୱିତୀୟ ସନ୍ତାନ ବଡ ଭାଇନା ଦୁଇଥର ଚେଷ୍ଟା କରି ମଧ୍ୟ ମେଡ଼ିକାଲ ରେ ସିଟ୍ ପାଇନଥିଲେ । ଆଉ ସାନନାନୀଙ୍କର ଗଣିତକୁ ଏତେ ଭୟ ଥିଲା ଯେ ସିଏ ଆର୍ଟସ୍

ପଢ଼ିଥିଲେ । ସାନ ଭାଇନା ମିତାଠାରୁ ଦୁଇବର୍ଷ ବଡ । ତାଙ୍କୁ ବାଓଲୋଜି ଭଲ ଲାଗେନି ବୋଲି କଲେଜରେ ବାଓଲୋଜି ନେଇନେନି ଓ ବୁର୍ଲାରେ ଇଞ୍ଜିନିୟରିଂ ପଢ଼ିଲେ । ମିତାକୁ ଯେଉଁଦିନ ମେଡ଼ିକାଲରେ ସିଟ୍ ମିଳିଲା ସେଦିନ ସବୁଠାରୁ ଖୁସି ହୋଇଥିଲେ ବାପା । ଘରେ କିନ୍ତୁ ସବୁ ବନ୍ଧୁ ବାନ୍ଧବ ଓ ବାହାରର ଚିହ୍ନା ଲୋକମାନେ ବାପାଙ୍କୁ କହିଥିଲେ ତାକୁ ଜେନେରାଲ୍ କଲେଜ୍‌ରେ ବର୍ଷେ ଦୁଇବର୍ଷ ପଢ଼ାଇ ବାହାଘର କରିଦେବା ପାଇଁ । କାହିଁକିନା ଯେଉଁବର୍ଷ ସିଏ ମେଡିକାଲ୍‌ରେ ସିଟ୍ ପାଇଲା ସେଇବର୍ଷ ବାପା ଚାକିରୀରୁ ଅବସର ଗ୍ରହଣକରିଥିଲେ । ସାନ ନାନୀଙ୍କର ବାହାଘର ସେଇବର୍ଷ ହୋଇଥିଲା ଓ ସାନ ଭାଇନାଙ୍କର ଇଞ୍ଜିନିୟରିଂ ପଢ଼ା ଆହୁରି ଦୁଇବର୍ଷ ବାକି ଥିଲା । ଛୋଟ ଭାଇ ପିୟୁ ପଢୁଥିଲା ସ୍କୁଲରେ । ଆଗକୁ ତାର ପଢ଼ା ଖର୍ଚ୍ଚ ବି ଥିଲା । ତଥାପି କାହାରି କଥାରେ କାନ ନ ଦେଇ ଓ ଆର୍ଥିକ ସମସ୍ୟାକୁ ଖାତିର ନ କରି ବାପା ତାକୁ ବରହମ୍‌ପୁରରେ ମେଡ଼ିକାଲର ଲମ୍ବା ପାଠ ପଢ଼ାଇଥିଲେ ହଷ୍ଟେଲରେ ରଖି । ଅଥଚ ଆଜି ସେଇ ଝିଅ ପାଖେ ରହି ଆଖି ଅପରେସନ କରାଇବେ ଯେ ବାପା କେତେ ଅନୁନୟ ହୋଇ ମିହିରଙ୍କ ଜରିଆରେ ଅନୁମତି ଲୋଡୁଛନ୍ତି ସମ୍ବୁଦିଙ୍କ ଠାରୁ ।

ବରହମ୍‌ପୁରରେ ଚାରିଦିନ ରହି ମିତା ଓ ମିହିର ଫେରିଆସିଥିଲେ କଟକ । ଘରେ ପହଞ୍ଚିଲା ବେଳକୁ ସଂଧ୍ୟା । ତା ପରଦିନ ବାପାଙ୍କୁ ନେଇ ସେମାନେ ରାଉରକେଲା ଯିବେ । ମିତା କଟକରେ ପହଞ୍ଚି କହିଥିଲା ବାପାଙ୍କୁ-ଚାଲ ତୁମ ଜିନିଷପତ୍ର ସଜାଡ଼ି ଦେବି । ବୋଉ ଉତ୍ତର ଦେଇଥିଲା-ସଜଡା ସରିଛି । ମିତା ଦେଖିଲା ବାପାଙ୍କର ଗୋଟେ ସୁଟ୍‌କେଶ-ଯେଉଁଥିରେ ତାଙ୍କର ଲୁଗାପଟା ଓ ନିତ୍ୟ ବ୍ୟବହାର କରିବା ଜିନିଷ, ଏବଂ ତା ସାଂଗରେ ଆଉଗୋଟେ କାଗଜ ପେଟି । ସେଥିରେ ଦୁଇଟି ବଡ ହର୍ଲିକ୍ସ ବୋତଲ, କର୍ଣ୍ଣଫ୍ଲେକ୍ସ ପ୍ୟାକେଟ, ସ୍କ୍ୱାସ୍, ଜାମ୍, ଘର ମରା ଗୁଆ ଘିଅ ଏବଂ ଯାବତୀୟ ଫଳ । ମିତା ବିରକ୍ତ ହେଲେ ବୋଉ ଉପରେ । ସିଏ କ'ଣ ବାପାଙ୍କ ପାଇଁ ଏ ସବୁ ଜିନିଷ କିଣି ପାରିବନି ଯେ ଏଠୁ ନେଇକି ଯିବ ? ବୋଉ କହିଥିଲା ବାପାଙ୍କ ଅପରେସନ ପାଇଁ ଏ ସବୁ ଆଗରୁ କିଣା ହେଇଥିଲା । ଏବେ କେବଳ ଫଳ କିଣା ହେଇଛି ବାପା ତ ରାଉରକେଲା ଯିବେ ଏଠି ଏ ସବୁ କ'ଣ ହେବ ? ସେଥିପାଇଁ ସାଂଗରେ ଦେଇ ଦେଇଛି । ମିତା ଯେତେ ମନା କଲେ ବି ବୋଉ ଶୁଣି ନଥିଲା ।

ମିତା ଘରକୁ ଆସିଲା ପରେ କମ୍ କଥାବାର୍ତ୍ତା କରୁଥିବା ବାପା ଆହୁରି ଗମ୍ଭୀର ହୋଇଯାଇଥିଲେ । ମିତା ଭାବିଲା ବୋଧହୁଏ ବାପା ଅପରେସନ କଥା ଚିନ୍ତା କରୁଛନ୍ତି । ବାପାଙ୍କୁ ଡାକ୍ତର ମିଶ୍ର ଦେଖିଲେ ଓ ତାଙ୍କର ସବୁପ୍ରକାର ରକ୍ତ ପରୀକ୍ଷା ଆଉଥରେ କରାଗଲା । ତାଙ୍କର ଅପରେସନ ତା ପର ସପ୍ତାହରେ ଧାର୍ଯ୍ୟ କରାଗଲା । ଅପରେସନ ପୂର୍ବ ଦିନ ବୋଉ ଓ ବଡ ଭାଇନା ଆସି ପହଞ୍ଚିବା କଥା । ବୋଉ ବଦଳରେ କିନ୍ତୁ ସାନନାନୀ

ଆସିଥିଲେ ବାପାଙ୍କ ଘରେ ତାଙ୍କ ପିଲାମାନଙ୍କୁ ଛାଡ଼ି । ମିତା ଜାଣିପାରିଲା ଝିଅ ଘରେ ନରହିବା ପାଇଁ ବୋଉ ନାନୀଙ୍କ ପିଲାମାନଙ୍କୁ ନିଜ ପାଖରେ ରଖି ତାଙ୍କୁ ପଠାଇଛି । ଭାଇନା ଓ ନାନୀଙ୍କ ହାତରେ ବୋଉ ପଠାଇଥିଲା ଆରୁଆ ଚାଉଳ ବସ୍ତେ, ପରିବା ଝୁଡ଼ିଏ ଓ ସବୁଥର ପରି ବାରି ନଡ଼ିଆର କୋରା ଓ କଟକର ପ୍ରସିଦ୍ଧ ବାରମଜା । ମିତା ଅଭିମାନରେ ଭାଇନାକୁ କହିଥିଲା-ମୁଁ ସବୁ ଜାଣିଛି । ତୁମେମାନେ ଏଠି ଆଠ ଦଶଦିନ ରହିବ ବୋଲି ବୋଉ ଏସବୁ ପଠାଇଛି । ଭାଇନା କହିଥିଲେ ତୁ ସେମିତି ଭାବ୍‌ନା । ଏ ଚାଉଳ ତ ଗାଁ'ର, କେଉଁ କିଣା ହେଇଛି ? ତୁମେମାନେ ଏଠି ଅରୁଆ ଖାଉଛ । କଟକରେ ତ କେହି ଅରୁଆ ଖାଆନ୍ତିନି । ତେଣୁ ବୋଉ ପଠାଇ ଦେଇଛି । ତୁ ତ ଜାଣିଛୁ ଛତ୍ରବଜାରରେ ପରିବା କେତେ ଶସ୍ତା । ତୁମର ଏଠି ପରିବା ସବୁ ପାଆ ହିସାବରେ ବିକ୍ରିହୁଏ । ବାପାଙ୍କ ଅପରେସନ ପାଇଁ ବ୍ୟସ୍ତ ରହି ବଜାର ଯିବାକୁ ହୁଏତ ବେଳ ନ ହେଇପାରେ ତିନି ଚାରିଦିନ । ସେଇଥିପାଇଁ କିଛି ପରିବା ଅଣା ହେଇଛି । ଆଉ ଏ ନଡ଼ିଆ କୋରା ଓ ମିକ୍‌ସଚର ଯିଏ ଗଲେ ଆସିଲେ ତ ପଠାହୁଏ । ଏଥିପାଇଁ ତୁ ଏତେ ବ୍ୟସ୍ତ କାହିଁକି ହେଉଛୁ ? ଭାଇନା ମିତାକୁ ଯେତେ ବାଆଁରେଇ ଲେ ବି ସିଏ ଠିକ୍ ବୁଝିପାରୁଥିଲା ବୋଉର କାରସାଦି ଓ ଫିସାଦି ।

ନାନୀ ଓ ଭାଇନା ପହଞ୍ଚିଲା ପରେ ବାପା ଟିକେ ସ୍ୱାଭାବିକ ହୋଇଥିଲେ । ବାପାଙ୍କ ଅପରେସନ ଭଲରେ ହେଇଥିଲା ଓ ସାତ ଦିନ ପରେ ତାଙ୍କୁ ଡାକ୍ତରଖାନାରୁ ଛୁଟି କରାହେଇଥିଲା । ତାଙ୍କ ଅପରେସନ ଆଖିଟି ପୁରା ଲାଲ୍ ଦିଶୁଥାଏ ଓ ସେଥିରେ ବାରମ୍ବାର ଔଷଧ ପଡୁଥାଏ । ବାପା ଘରକୁ ଆସିବାର ଦୁଇଦିନ ପରେ ଭାଇନା ଓ ନାନୀ କଟକ ଫେରିଗଲେ । ସେମାନେ ଚାଲିଗଲା ପରେ ବାପା ପୁଣି ଅସ୍ୱାଭାବିକ ହୋଇଗଲେ ଓ ସବୁବେଳେ ଚୁପ୍‌ଚାପ୍ ରହିବାକୁ ଲାଗିଲେ । ସେମାନେ ଯିବାର ଦିନକ ପରେ ବାପାଙ୍କୁ ଭୀଷଣ ଜ୍ୱର ହେଲା ଓ ସିଏ ଖିଆପିଆ ଛାଡ଼ିଦେଲେ । ମିତା ଭାବିଲା ଦିନେ ଦୁଇଦିନ ଭିତରେ ଜରଟା ଛାଡ଼ିଯିବ । କିନ୍ତୁ ଆଣ୍ଟିବାଓଟିକ୍ ଖାଇଲାପରେ ମଧ୍ୟ ଜର କମିଲାନି ଓ ବାପା ଶେଯରେ ଲାଗିଗଲେ । ମିହିର ଯେତେ ବୁଝାଇଲେ ବି ମିତା ଖୁବ୍ ଡରିଗଲା । ଯଦି ବାପାଙ୍କର କିଛି ହେଇଯିବ ସିଏ ଆଉ କାହା ସାମନାରେ ମୁହଁ ଦେଖାଇ ପାରିବନି । ମନେ ମନେ ଭାବୁଥାଏ କାହିଁକି ବାପାଙ୍କୁ ଏଠିକୁ ଆଣିଲା ? ଜର ହେବାର ତୃତୀୟ ଦିନ କାନ୍ଦି କାନ୍ଦି ମିତା ଭାଇନାଙ୍କ ପାଖକୁ ଫୋନ୍ କଲା । ବାପାଙ୍କ ଦେହ ଭୀଷଣ ଖରାପ । ବୋଉକୁ ସାଂଗରେ ଆଣି ଶିଘ୍ର ରାଉରକେଲା ଆସ । ସେଦି ରବିବାର ଥିବାରୁ ପୁରୀରୁ ସାନ ଭାଇନା କଟକ ଆସିଥିଲେ ନିଜ ଗାଡି ନେଇ । ମିତାର ଫୋନ ପାଇ ଘରେ ସମସ୍ତେ ଡରିଯାଇଥିଲେ । ଫୋନ୍ ପାଇବାର ଘଣ୍ଟେ ଭିତରେ ସାନ ଭାଇନା, ବୋଉ ଓ ବଡ ଭାଇନାଙ୍କ ପୁଅ ସେଇ କାର୍‌ରେ ଘରୁ

ବାହାରିପଡିଥିଲେ ଓ ପ୍ରାୟ ରାତି ବାରଟାରେ ମିତା ଘରେ ପହଞ୍ଚିଲେ । ସ୍ତ୍ରୀ, ପୁଅ ଓ ନାତିକୁ ଦେଖି ବାପା ବିଛଣାରୁ ଉଠି ବସିଥିଲେ ଓ ତା ପରଦିନ ବାପାଙ୍କର ଜର ଆଶ୍ଚର୍ଯ୍ୟଜନକ ଭାବେ ଛାଡ଼ିଯାଇଥିଲା । ଦୁଇଦିନ ରହିବା ପରେ ବାପାଙ୍କ ପୁଅ ଓ ନାତି କଟକ ଫେରିଯାଇଥିଲେ । ବାପାଙ୍କର ସେହି ଅବସ୍ଥାରେ କଟକ ଫେରିଯିବା ସମ୍ଭବ ନଥିଲା । ତାଙ୍କ ଆଖି ପ୍ରତ୍ୟେକ ସାତ ଦିନରେ ଥରେ ଚେକ୍ ଅପ୍ ହେଉଥିଲା ଓ ତାକୁ ଖରାକୁ ବାହାରିବା ମନା କରା ଯାଇଥିଲା । ସେମାନେ ଚାଲିଗଲା ପରେ ପୁଣି କାଳେ ବାପାଙ୍କୁ ଜର ହେବ ଭାବି ମିତା ବୋଉକୁ ଛାଡ଼ି ନଥିଲା । ତେଣୁ ଇଚ୍ଛା ନଥିଲେ ବି ବାପାଙ୍କ ଦେହ ପାଇଁ ବାଧ ହୋଇ ବୋଉକୁ ମିତା ଘରେ ରହିବାକୁ ପଡିଥିଲା ।

ବୋଉ ଘରେ ରହିଲାରୁ ମିତାକୁ ଭାରି ଭଲ ଲାଗୁଥାଏ । ଆଉ ଆସି ନଥିଲେ ବୋଲି ମନଦୁଃଖ କରୁଥିବା ଟିନା ଓ ମିଟୁ ଖୁବ୍ ଖୁସି ହେଉଥାନ୍ତି । ପିଲାଙ୍କ ବଖରାରେ ଯୋଡା ଖଟରେ ବାପା, ଟିନା ଓ ମିଟୁ ଶୁଅନ୍ତି ଓ ଫୋଲଡ଼ିଂ ଖଟ ପକାଇ ବୋଉ ସେଠି ଶୁଏ । ପିଲାମାନଙ୍କ ଖରା ଛୁଟି ହୋଇଥିବାରୁ ସବୁ ସମୟ ଅଜା ଆଈଙ୍କ ସାଂଗରେ କଟେ । ପିଲାମାନଙ୍କ ପୁରା ଦାୟିତ୍ୱ ବୋଉ ନେଇଥାଏ । ନିଜେ କିନ୍ତୁ ଚା କପ୍‌ଟେ କରି ପିଏନି କି ବାପାଙ୍କୁ ସରବତ୍ କି ହରଲିକ୍ସ ଟିକେ ଘାଣ୍ଟି କି ଦିଏନି । ମିତା ଚା ଓ ଜଳଖିଆ ବୋଉ ହାତକୁ ବଢ଼ାଇଲେ ସିଏ ଖାଏ । ମିତାର ଶୋଇବା କକ୍ଷକୁ କେବେବି ବାପା ବୋଉ ଯାଆନ୍ତିନି । ମିତା ବାରଟା ବେଳେ ହସ୍‌ପିଟାଲ୍‌ରୁ ଫେରିଲାବେଳକୁ ବୋଉ ପିଲାମାନଙ୍କୁ ଖାଇବାକୁ ଦେଇସାରିଥାଏ । ମିତା ବାପାଙ୍କୁ ଖାଇବାକୁ କହିଲେ ସିଏ ମନା କରନ୍ତି-କୁହନ୍ତି ମିହିର ଆସିଲେ ଖାଇବେ । ବାପାଙ୍କ ଏ କଥା ଶୁଣି ବୋଉ ବି ଚୁପ୍ ରହେ । ଅଥଚ ଘରେ ବାପାଙ୍କ ଖାଇବା ସମୟ ବେଶ କଡାକଡି ଭାବେ ବୋଉ ପାଳେ । ଖାଇବା ସମୟ ଟିକେ ଏପଟ ସେପଟ ହେଲେ ବାପାଙ୍କ ଦେହ ଖରାପ ହେଇଯିବ ବୋଲି ବୋଉ ବିରକ୍ତ ହୁଏ । ମିହିର ଦୁଇଟାରେ ଆସିଲା ପରେ ବାପା, ମିହିର ଓ ମିତା ଡାଇନିଂ ଟେବୁଲ୍‌ରେ ଖାଆନ୍ତି । ବୋଉ କିନ୍ତୁ ମିତା କଥା ନଶୁଣି ପିଲାଙ୍କ ବଖରାରେ ତଳେ ବସିଖାଏ ।

ମିତା ଲକ୍ଷ୍ୟ କରେ, ବାପା ବୋଉ ପଛ ବାରଣ୍ଡାରେ ବସି ମିତା ସାଂଗରେ ଏବଂ ପିଲାମାନଙ୍କ ସାଂଗରେ କଥାହେଉଥିବେ, କିନ୍ତୁ ମିହିର ଡାକ୍ତରଖାନାରୁ ଫେରିଲେ ଓ ତାଙ୍କ ଗାଡ଼ିର ଆୱାଜ୍ ଶୁଣିଲେ ବୋଉ ମୁଣ୍ଡରେ ପଣତ ଦେଇ ପିଲାଙ୍କ ବଖରାରେ ପଶିଯିବ ଓ ବାପା ନ ଜାଣିଲାପରି ତା ପଛେ ପଛେ ଚାଲିଯିବେ । ପ୍ରାୟ ସମୟ ମୁହଁ ଶୁଖେଇ ବସିଥିବେ ଦୁଇଜଣ ଯାକ । କେବଳ ଦୁଇ ଭାଇନାଙ୍କର ଫୋନ୍ ଆସିଲେ ସେମାନଙ୍କ ମୁହଁରେ ଖୁସି ଭାବ ଉକୁଟି ଆସେ ସେତିକି ସମୟ ପାଇଁ । ଆଉ ଯଦି ଶ୍ୱଶୁରଙ୍କର ଫୋନ୍ ଆସିଲା ତାହେଲେ

ସେମାନଙ୍କ ଦେହରୁ ଅଧା ରକ୍ତ ଶୁଖିଯାଇ ମୁହଁ ଶେଥା ପଡିଯାଏ ଅପରାଧୀ ମାନଙ୍କ ଭଳି । ପରେ ଧୀର ଗଳାରେ ମିତାକୁ ବାପା ପଚାରନ୍ତି-ସମୃଦି ଆମର ରହିବା ବିଷୟରେ କିଛି କହୁଥିଲେ କି ? ବାପାବୋଉଙ୍କର ଏ ନୂଆ ରୂପ ମିତାକୁ ଅନ୍ତୁରି କରି ଦେଉଥିଲେ ବି ସେମାନଙ୍କ ବିଷାଦଭରା ମୁହଁ ଦେଖି ମିତା କିଛି କହିପାରୁନଥିଲା । କିନ୍ତୁ ସେଦିନ ମିତା ନିଜକୁ ନିୟନ୍ତ୍ରଣରେ ରଖି ପାରିନଥିଲା ଯେଉଁ ଦିନ ମିଠା ଭଲପାଉଥିବା ବାପାଙ୍କ ପାଇଁ ଡିଉଟିରୁ ଫେରିଲାବେଳେ ସିଏ ରସମଲାଇ ହାଣ୍ଡିଏ ଆଣିକି ଆସିଥିଲା । ମିଠା ଦେଖି ବାପାବୋଉ ଖୁସି ତ ହୋଇ ନଥିଲେ ଆହୁରି ବୋଉ କହିଥିଲା-ବୋଝ ଉପରେ ନଳିତା ବିଡା । ଆମ ପାଇଁ କେତେ ଖର୍ଚ୍ଚ ହେଉଛି ଏଠି । ପୁଣି କ'ଣ ପାଇଁ ଖର୍ଚ୍ଚାନ୍ତ ହୋଇ ଯାକୁ ଆଣିଲୁ ? ବୋଉର ଏ କଥା ରେ ଆଘାତ ପାଇ ମିତା ଉଚ୍ଚ ସ୍ୱରରେ ମନ୍ତବ୍ୟକଲା-ତୁମେମାନେ ପୁଅଝିଅ ଭିତରେ ଏତେ ପାତର ଅନ୍ତର କର ବୋଲି ମୁଁ ଜାଣିନଥିଲି । ବୋଉ ଉଦ୍ଦେଶ୍ୟରେ ପାଟିକରି କହିବାକୁ ଲାଗିଲା-ପୁରୀରେ ଭାଇନାଙ୍କ ଘରେ ରହିଲାବେଳେ ତୁ ଭାଇନାଙ୍କୁ ହଜାରେ ବରାଦ କରୁ । ବାପାଙ୍କ ପାଇଁ ରାବିଡି ଆଣିଦେ । ଛେନାପୋଡ ଆଣିଦେ ଆଉ ନିଜ ପାଇଁ କେବେ କଖାରୁ ଶାଗ ବିଡେ ଆଣିବା ପାଇଁ କହୁତ କେବେ ମନ୍ଦିରରୁ ଅବଢ଼ା ଅନ୍ନ ପାଇଁ । ଏଠି ତୁମେମାନେ ମୋ ସହିତ କାହିଁକି ଏମିତି ବ୍ୟବହାର କରୁଛ ତାର ଉତ୍ତର ତୁମମାନଙ୍କୁ ଆଜି ଦେବାକୁ ପଡ଼ିବ ।

ମିତାର ପାଟି ଶୁଣି କିଛି କ୍ଷଣ ପାଇଁ ଦୁହେଁ ନୀରବ ହୋଇଗଲେ । ତା ପରେ ବାପା ମିତାକୁ ବୁଝାଇବାକୁ ଲାଗିଲେ-ବାହାଘର ଆଗରୁ ମିତା ଉପରେ ସେମାନଙ୍କର ଅଧିକାର ଥିଲା । ବାହାଘର ପରେ ଯଦି ବାପାବୋଉ ତା ଉପରେ ସେହି ଅଧିକାର ସାବ୍ୟସ୍ତ କରିବେ ତା ହେଲେ ସମାଜର ନିୟମ ଉଲ୍ଲଘଂନ ହେବ । ଶାନ୍ତି ଭଗ୍ନ ହେବ ପରିବାରରେ ଓ ସମାଜରେ । ଏ ସବୁ କହିବାବେଳେ ବାପାଙ୍କ ମୁଖ ମଣ୍ଡଳ ଥିଲା ମ୍ଳାନ, ଦୃଷ୍ଟି ଅବନତ ଓ କଣ୍ଠ କରୁଣ । ମିତା ପାଇଁ ସେ ଦୃଶ୍ୟଥିଲା ମର୍ମସ୍ପର୍ଶୀ । କୋହ ଲୁଚାଇବା ପାଇଁ ମିତା ସେଠାରୁ ଉଠି ନିଜ ବଖରାକୁ ଚାଲିଆସିଥିଲା ।

ବାପାଙ୍କ ଆଖି ଅପରେସନର ଦେଢ଼ମାସ ବିତିଗଲା ଓ ସେମାନଙ୍କ କଟକ ଫେରିବା ଦିନ ଆସିଗଲା । କାଲି ସକାଳେ ବଡ ଭାଇନା ଆସିବେ ଓ ରାତି ଟ୍ରେନ୍‌ରେ ସେମାନଙ୍କୁ ନେଇ ଘରକୁ ଫେରିଯିବେ । ବାପା ବୋଉ ଛୋଟ ପିଲାଙ୍କ ପରି ଖୁସି ହେଉଥାନ୍ତି । ସେ ଦିନ ସଂଧ୍ୟାରେ ମିତା ବୋଉକୁ ଡାକିଥିଲା ବଜାର ଯିବାପାଇଁ ତାହାଲେ ବୋଉ ପସନ୍ଦରେ ତା ପାଇଁ ଖଣ୍ଡେ ଶାଢ଼ୀ ଓ ବାପାଙ୍କ ପାଇଁ ଧୋତି ଓ କୁର୍ତ୍ତା କିଣିଦେବ । ଏ କଥା ଶୁଣି ଦୁହେଁ ଗମ୍ଭୀର ହୋଇଯାଇ ଥିଲେ ଓ ବାପା କହିଥିଲେ-ତୁ ଆମ ପାଇଁ ବହୁତ କଷ୍ଟ କଲୁଣି । ଏତେ ହଇରାଣ ହେବୁ ଜାଣିଥିଲେ ମୁଁ ଏଠି ଅପରେସନ କରାଇ ନଥାନ୍ତି । ଆମ ପାଇଁ ମିହିର ଓ

ପିଲାମାନଙ୍କର ଯତ୍ନ ତୁ ଠିକ୍‌ରେ ନେଇ ପାରୁନୁ । ଆମକୁ ଋଣୀ କରନା । ଭବିଷ୍ୟତରେ ଆଉ କେବେ ତୋ ଘରକୁ ଆସିଲେ ତୁ ଯାହା କିଣେଇ ଦେବୁ ଆମେ ନିଶ୍ଚେ ନେବୁ । ବାପା ଏତିକି କହୁ କହୁ ବୋଉ ତା ସୁଟକେସ୍ ଖୋଲି ତା'ର ଦୁଇଟି ସମ୍ବଲପୁରୀ ଶାଢ଼ୀ ଯାହାକୁ ମିତା କେବେ ଭଲ ହେଉଛି ବୋଲି କହିଥିଲା ଆଣି ତା ହାତରେ ଧରାଇ ଦେଲା ଓ ତରତରରେ କାନରୁ ଧଳା ପଥରର ଟପ୍ ଦୁଇଟି ଖୋଲି ମିତା ହାତକୁ ବଢ଼ାଇ ଦେଇ ନେହୁରା ହେଲାପରି କହିବାକୁ ଲାଗିଲା-ବାପାଙ୍କ ଦେହ ଖରାପ ଶୁଣି ତରବରରେ ଚାଲିଆସିଲି ଖାଲି ହାତରେ । ଏ ସବୁ ତୁ ରଖ । ଏ ବୟସରେ ଶାଢ଼ୀ, ଗହଣା ମୋର ଆଉ କ'ଣ ହେବ ? କେତେ ଦିନ ବା ଆଉ ବଂଚିବି-ମୋ ରାଣ, ନାହିଁ କରନା, ମୋ ସୁନାଟା ପରା । ମିତା ବୋଉର ହାତ ଛିଂଚାଡ଼ି ଦେଇ ଶ୍ୱାସରୁଦ୍ଧ କଣ୍ଠରେ କହିଥିଲା-ତୁ ମତେ କ'ଣ ବୋଲି ଭାବୁଛୁ ? ଏବଂ ଆଖିର ଲୁହ ଲୁଚାଇବା ପାଇଁ ଅନ୍ୟ ଆଡେ ମୁହଁ ବୁଲାଇଦେଇଥିଲା । ବାପା ମିତାକୁ କହିଲେ-ମା, ବୋଉଙ୍କ କଥା ମାନିନେ । ଯାହା ଦେଉଛନ୍ତି ରଖିଦେ । ବାପାଙ୍କ କଣ୍ଠ ଭାରି ଶୁଭୁଥିଲା ।

ତା ପରଦିନ ବଡ ଭାଇନା ଆସି ପହଞ୍ଚିଲେ । ବାପା ବୋଉ ବେଶ୍ ଖୁସି ଜଣାପଡୁଥିଲେ ସେ ଦିନ । ମିତା ଜାଣିଥିଲା ବୋଉର ଏଠିକୁ ଆସିବାଟା ଏଇଥିଲା ପ୍ରଥମ ଓ ଶେଷ । ବାପା ଆଗରୁ ଟିନା ଓ ମିଟୁ ଜନ୍ମ ହେଲାବେଳେ ଚେନ୍, ଲୁଗାପଟା, ମଠା ଆଦି ଧରି ଏଠିକୁ ଆସିଛନ୍ତି । ମିତା ମାଇନ୍‌ସ୍‌ରେ ଚାକିରୀରେ ଯୋଗଦେଲାବେଳେ ମିଟୁକୁ ଧରିବାପାଇଁ ଗାଁରୁ ପିଲାଟିଏ ଯୋଗାଡ କରି ଆଣିଥିଲେ । ଏବେ କିନ୍ତୁ ବାପାଙ୍କୁ ପଂଚସ୍ତରୀ ବର୍ଷ ବୟସ ହେଲାଣି । ଆଉ କୋଉ ସିଏ ଆସି ପାରିବେ ? ସେ ଦିନ ସାରା ମିତାକୁ କାନ୍ଦ କାନ୍ଦ ଲାଗୁଥାଏ ।

ରାତିରେ ମିହିର, ମିତା ଓ ପିଲାମାନେ ସେମାନଙ୍କୁ ଛାଡ଼ିବା ପାଇଁ ଷ୍ଟେସନ ଗଲେ । ଟ୍ରେନ୍‌ରେ ବାପା ବସିଥିଲେ ଭାଇନାଙ୍କ ଡାହାଣ ପାଖେ । ହୃତ ଗୌରବ ଫେରି ପାଇଲା ପରି ତାଙ୍କ ମୁହଁ ଦିଶୁଥିଲା ଉଜ୍ଜ୍ୱଳ । ଝରକା ପାଖେ ବୋଉ ବସିଥାଏ । ଭାଇନାକୁ ଲାଗିକରି ତାଙ୍କ ବାମପଟେ । ଏବେଯାଏ ଯେତେବେଳେ ମିତା ବୋଉକୁ ଛାଡ଼ି ରାଉରକେଲା ଆସିଛି ସବୁଥର ବୋଉ ମନ ଦୁଃଖ କରେ ଓ କାନ୍ଦେ । ଆଜି କିନ୍ତୁ ବୋଉ ମୁହଁରେ ଦୁଃଖର ଲେଶ ମାତ୍ର ଚିହ୍ନ ନଥିଲା । ବରଂ ମୁହଁରେ ଲାଗି ରହିଥିଲା ଚେନାଏ ମୃଦୁ ହସ । ଟ୍ରେନ୍ ହୁଇସିଲ୍ ଦେଇ ଚାଲିବା ଆରମ୍ଭ କଲା । ଝରକା ପଟୁ ମିତା ଦେଖୁଥିଲା ବୋଉର ମୁହଁ । ବିନା କାନ ଫୁଲରେ ବି ତା ମୁହଁ ଦିଶୁଥିଲା ବେଶ୍ ସତେଜ ଓ ଡୋଫା ।

□□□

# ବିଜୟିନୀ

କାଜୁଆଲ୍‌ଟିରେ ରୋଗୀ ଦେଖୁ ଦେଖୁ ହାତଘଡିକୁ ଚାହିଁଲା ମିତା । ଦଶଟା ବାଜିଲାଣି । ଭୋକରେ ପେଟ ତାର ଆଉଟୁ ପାଉଟୁ ହେଲାଣି । 'ଏ' ସିଫ୍‌ଟ ଡିଉଟି ଥିବାରୁ ସକାଳେ ତରତରରେ ଯାହା ଟା' କପେ ପିଇକି ଆସିଥିଲା । ବଡି ସକାଳୁ ତା'ର ଖାଇବାକୁ ଇଚ୍ଛା ହୁଏନି । ଆଉ ଯଦି ବା ଜବରଦସ୍ତି ଖାଏ ତେବେ ତାକୁ ବାନ୍ତି ଲାଗେ । ସକାଳ ନ'ଟା ପରେ ହିଁ ତାକୁ ଜଳଖିଆ ଖାଇବାକୁ ଭଲ ଲାଗେ । ଆଜି ଶ୍ରମିକ ଦିବସ ଥିବାରୁ ଆଶୁ ଚିକିତ୍ସା ବିଭାଗକୁ ଛାଡ଼ିଦେଲେ ବାକି ସବୁ ବହିଁ ଚିକିତ୍ସା ବିଭାଗ ବନ୍ଦ । ଏମିତି ଛୁଟି ଦିନମାନଙ୍କରେ ବେଶି ଭିଡ଼ ହେଉଥିବାରୁ ଅନ୍ୟ ବିଭାଗର ଡାକ୍ତରମାନଙ୍କୁ ଏଠି ପୋଷ୍ଟିଂ କରାହୁଏ । ଆଜି ମିତାର ପାଳି ପଡ଼ିଛି । ସବୁଦିନ ଆଶୁ ଚିକିତ୍ସା ବିଭାଗରେ କାମ କରୁଥିବା ଡାକ୍ତର ଦାଶ ଓ ଡାକ୍ତର ମହାନ୍ତିଙ୍କର ମଧ୍ୟ ଏଠାରେ 'ଏ' ସିଫ୍‌ଟି ଡିଉଟି ଅଛି ।

'ନ'ଟାରେ ଯେତେବେଳେ ମିତାକୁ ଭୋକ ଲାଗିବା ଆରମ୍ଭ ହୋଇଥିଲା ସିଏ ବିଶ୍ରାମ କକ୍ଷକୁ ଯାଇ ସାଙ୍ଗରେ ଆଣିଥିବା ବିସ୍କୁଟ ପ୍ୟାକେଟ୍ ଟି ଖୋଜିଥିଲା । ଦେଖିଲାବେଳକୁ ଭୁଲ୍‌ରେ ସେ ପ୍ୟାକେଟ୍‌ଟି ଘରେ ଛାଡ଼ି ଆସିଛି । ମନ ଦୁଃଖରେ ସେଠାରୁ ଫେରି ଆସି ପୁଣି ରୋଗୀ ଦେଖାରେ ମନ ଦେଇଥିଲା ମିତା । ଏ ଭିତରେ ଡାକ୍ତର ଦାଶ ଓ ଡାକ୍ତର ମହାନ୍ତି ଜଣକ ପରେ ଜଣେ ପନ୍ଦର କୋଡିଏ ମିନିଟ୍ ପାଇଁ ସେମାନଙ୍କ ଘରକୁ ଯାଇ ଜଳଖିଆ ଖାଇ ଆସି ସାରିଲେଣି । ସେମାନେ ଆସିଗଲା ପରେ ମିତାକୁ ବାରମ୍ବାର କହୁଛନ୍ତି ଘରକୁ ଯାଇ କିଛି ହେଲେ ଖାଇ ଆସିଯିବା ପାଇଁ । ମିତା ତ ସେମାନଙ୍କ ପରି ପୁରୁଷ ଲୋକ ହେଇନି ଯେ ଏଠୁ ଫୋନ୍ କରିଦେଲେ ଘରେ ଜଳଖିଆ ତିଆରି ହେଇଯାଇଥିବ ଓ ସିଏ ପନ୍ଦର କୋଡ଼ିଏ ମିନିଟ୍ ଭିତରେ ଖାଇ କରି ଫେରି ଆସିବ । ଘରକୁ ଗଲେ ତାକୁ ନିଜେ ଜଳଖିଆ ତିଆରି କରି ଖାଇବାକୁ ପଡିବ । ଘରେ କାମ କରୁଥିବା ସ୍ତ୍ରୀ ଲୋକ କୋଉଲି ସମସ୍ତଙ୍କୁ ଜଳଖିଆ ଦେଇସାରି ତା ଘରକୁ ଚାଲି ଯିବଣି । ଭାତ ରାନ୍ଧିବା ପାଇଁ ପୁଣି ବାରଟା ବେଳକୁ ଘରକୁ ଆସିବ । ମିତା ଏବେ ଘରକୁ ଗଲେ ଭଣ୍ଡାରୀକୁ ଦେଖି ନଖ କଅଁଳିଲା ଭଳିଆ ସମସ୍ତେ ତାକୁ କାମ ବରାଦ କରିବେ । ଏତେ କାମ ସବୁ କରୁ କରୁ ତାକୁ ଚାଳିଶ ପଇଁଚାଳିଶ ମିନିଟ୍ ଲାଗିଯିବ । ଏତେ ସମୟ ଏଠାରେ ଅନୁପସ୍ଥିତ ରହିଲେ ତାକୁ ମାଡ଼ି ପଡ଼ିବ । ମିତାର ଝିଅ ଦିନ କଥା ମନେ ପଡ଼ିଲା । କଲେଜରୁ ଭୋକିଲା ହୋଇ ଫେରିଲାବେଳେ ମିତା ଫାଟକ ପାଖରୁ

ଚିତ୍କାର କରେ-ବୋଉ ଭୋକ । ମିତା ହାତଗୋଡ ଧୋଇ ନ ସାରୁଣୁ ବୋଉ ଜଳଖିଆ ଧରାଇ ଦିଏ । ତେବେ ବି କେବେ କେବେ ମିତା ମନକୁ ବୋଉ ଦେଇଥିବା ଜଳଖିଆ ମନକୁ ପାଏନି ଯେ ସିଏ ଅସନ୍ତୁଷ୍ଟ ହୋଇ ବୋଉ ଉପରେ ଗାରୁ ଗାରୁ ହୁଏ । ମିତାର ଛାତି ଥରାଇ ଦୀର୍ଘନିଶ୍ୱାସଟେ ବାହାରି ପଡ଼ିଲା । ଦୁଇବର୍ଷ ହେଲାଣି ବୋଉ ଆରପାରିକୁ ଚାଲିଗଲାଣି । ଆଖି ତାର ଲୁହରେ ଜକେଇ ଆସିଲା ।

ଆଜି ସକାଳେ ଛ'ଟା ଆଗରୁ ଯେତେବେଳେ ସିଏ ଘରୁ ବାହାରିଥିଲା ସେତେବେଳେ ଘରେ କାହାରି ନିଦ ଭାଙ୍ଗି ନଥିଲା । ମିହିର, ଝିଅ ଟିନା, ପୁଅ ମିଟୁ ଓ ଶାଶୁ ସମସ୍ତେ ଶୋଇଥିଲେ । ଭିତରୁ କବାଟ ବନ୍ଦ କରିବା ପାଇଁ ଶାଶୁଙ୍କୁ ଉଠାଇଥିଲା ସିଏ । କବାଟ ବନ୍ଦ କଲାବେଳେ ସିଏ ପଚାରିନଥିଲେ ମିତା କଅଣ ଖାଇଛି ନା ନାଇଁ । ଖାଇବା ଜିନିଷ ସାଙ୍ଗରେ କିଛି ନେଇଚି ନା ନାଇଁ ? ଆଜି ଆଲାର୍ମ ଦେଇ ପାହାନ୍ତିଆ ଚାରିଟାରୁ ଉଠି ନିଜ କାମ ଓ ଘରର ଅଧା କାମ ସାରି ମିତା ଘରୁ ଆସିଛି । କାଲିଠାରୁ କୋଇଲିକୁ କହିଥିଲା ଆଜି ଜଳଖିଆରେ କ'ଣ ରନ୍ଧାହେବ ଓ ମଧ୍ୟାହ୍ନ ଭୋଜନରେ କ'ଣ ହେବ । ଟିନା ଓ ମିଟୁ ବ୍ରେଡ୍ ଓ ଅଣ୍ଡା ଆମ୍ଲେଟ୍ ଖାଇଥିବେ । ଶାଶୁ ଓ ମିହିର ଚୁଡ଼ା ଉପମା ଖାଇଥିବେ । ଖାଇଲାବେଳେ କେହିହେଲେ ମନେ କଲେନି ମିତା କ'ଣ ଖାଇଛି କି ନାହିଁ ? ଅଥଚ ମିହିରଙ୍କର ଯେଉଁ ରବିବାର ଡାକ୍ତରଖାନାରେ ଡିଉଟି ଥାଏ ମିତା ସକାଳୁ ଉଠି ତାଙ୍କ ପାଇଁ ଜଳଖିଆ କରେ । ମିତା ତ ଇଚ୍ଛା କଲେ ସେତକ ସମୟ ଶୋଇ ପାରନ୍ତା । ଏତେ ସବୁ କଲେ ବି ପୂଜା ସାରି ଶାଶୁ ଖାଇଲାବେଳେ ମିହିରଙ୍କ ଖାଇବା ବିଷୟରେ ତଦନ୍ତ କରନ୍ତି ।

'ମ୍ୟାଡ଼ାମ୍, ଆପଣ ଯଦି ଘରକୁ ନ ଯିବେ ତା ହହେଲେ ୱାର୍ଡ଼ବୟ ହାତରେ କିଛି ମଗାଇଦେବା ଏ ସାମ୍ନା ଦୋକାନରୁ', କହିଲେ ଡାକ୍ତର ଦାଶ ।

ମିତା ଭାବିଲା ଆଜିକାଲି ଇଉନିୟନ ବାଲା ଯାହା ହେଲେଣି ଆଜି ଯଦି କାହାକୁ ପାଞ୍ଚ ଦଶମିନିଟ୍ ପାଇଁ ବଜାର ପଠାଇବ ତା ଆରଦିନ ଖବର କାଗଜରେ ତା ନାଁରେ ହଜାରେ କଥା ବାହାରିପଡ଼ିବ । ଏ ଦୁଃଖରୁ ସେ ଦୁଃଖ ବଳିପଡ଼ିବ । ତେଣୁ ମିଛରେ ମିତା କହିଲା ସିଏ ଘରୁ ପେଟେ ଖାଇକି ଆସିଛି, ତାକୁ ଜମାରୁ ଭୋକ ନାହିଁ । ଏତିକି କହି ବିଶ୍ରାମ କକ୍ଷରୁ ଆସି ସୁରେଇରୁ କାଢ଼ି ଦୁଇଗ୍ଲାସ ପାଣି ଢ଼କ ଢ଼କ କରି ପିଇଲା । କିନ୍ତୁ ପାଣି ପିଇଲେ କ'ଣ ଭୋକ ମରେ ? ମିହିରଙ୍କୁ ଫୋନ୍ କରିବ କି କିଛି ଜଳଖିଆ ଆଣିବା ପାଇଁ ? ମିତାର ମନେ ପଡ଼ିଲା ଗତ ଜାନୁଆରୀ ଛବିଶ ତାରିଖରେ ତାର ଏଇଠି ବି ସିଫଟ୍ ଡିଉଟି ପଡ଼ିଥିଲା ।

ଦୁଇଟାରେ ଡାକ୍ତରଖାନା ଆସିବ ବୋଲି ଦିନ ବାରଟାରୁ ସେମାନଙ୍କୁ ଖାଇବାକୁ ଦେବାପାଇଁ ଡାକି ଡାକି ଥକି ଯାଇଥିଲା । ସେ ଦିନ ଛୁଟି ଥିବାରୁ ଘରେ ସମସ୍ତେ ଡେରିରେ ଜଳଖିଆ ଖାଇଥିଲେ । ତେଣୁ ସେମାନଙ୍କୁ ଭୋକ ଲାଗୁନଥିଲା । ତା ଛଡ଼ା ଟି.ଭି.ରେ କାର୍ଯ୍ୟକ୍ରମ ଦେଖିବାରେ ମଗ୍ନ ଥିଲେ ସଭିଏଁ । ଶେଷରେ ମିତା କାନ୍ଦୁଣୁ ମାନ୍ଦୁଣୁ ହେବାରୁ ସେମାନେ ସାଢ଼େ ଗୋଟେ ବେଳେ ଖାଇବାକୁ ଆସିଥିଲେ । ସେମାନଙ୍କୁ ଭାତ ବାଢ଼ିସାରି ତରତର ରେ କେଇ ଗୁଣ୍ଡା ଖାଇ ସିଏ ଉଠିପଡ଼ି ହାତ ଧୋଇଥିଲା । ଖାଇଦେଲେ ତ କାମ ସରେନି । ଖାଇଲା ପରେ ଅନେକ କାମ କରିବାକୁ ପଡ଼େ । ଅଇଁଠା ଥାଳି ଉଠାଅ । କୁକୁର କୁ ଖାଇବାକୁ ଦିଅ । ଟେବୁଲ୍ ପୋଛ । ଯାହା ତରକାରୀ ପତ୍ର ବଳିଲା ତାକୁ ଟିଫିନ୍‌ରେ ଭରି ଫ୍ରିଜ୍‌ରେ ରଖ ଇତ୍ୟାଦି ଇତ୍ୟାଦି । ସେ ଦିନ ସବୁ କାମ ସାରି ନିଜେ ତିଆର ହେଇ ଡାକ୍ତରଖାନାରେ ପହଞ୍ଚିଲା ବେଳକୁ ଦଶମିନିଟ୍ ଡେରି ହୋଇସାରିଥିଲା । ମିତାକୁ ଖରାପ ଲାଗିଥିଲା । ସେଥର ଯେମିତ ସନ୍ଧ୍ୟା ସାତଟା ବେଳକୁ ତାକୁ ଭାରି ଭୋକ ଲାଗିଥିଲା ଓ ସିଏ ମିହିରଙ୍କୁ ଫୋନ୍ କରିଥିଲା ତା ପାଇଁ କିଛି ଜଳଖିଆ ଆଣିଦେବା ପାଇଁ । ମିତା ଯେମିତି ଏକଥା ମିହିରଙ୍କୁ କହିଥିଲା ସିଏ ହଁ କି ନାହିଁ କିଛି ନ କହି ଧଡ଼କିନା ଫୋନ୍‌ଟା ରଖିଦେଇଥିଲେ । କିଛି ବୁଝି ନ ପାରି ମିତା ଆହୁରି ଥରେ ଫୋନ୍ କରିଥିଲା । 'ହଁ ଆସୁଛି କହି' ପୁଣି ଥରେ ଫୋନ୍‌ଟାକୁ ରଖିଦେଇଥିଲେ ମିହିର । ମିତାକୁ ତାଙ୍କ ସ୍ୱରଟା ବେଶ୍ ଅସ୍ୱାଭାବିକ ଲାଗିଥିଲା ।

ଅଧଘଣ୍ଟା ପରେ ଗରମ ଗରମ ବରା କେତୋଟି ଧରି ମିହିର ଆସିଥିଲେ । ତାଙ୍କୁ ଦେଖିଦେଇ ମିତା ଉଠିପଡ଼ି ବିଶ୍ରାମ କକ୍ଷକୁ ଆସିଥିଲା ଓ ମିହିରଙ୍କ ହାତରୁ ଠୁଙ୍ଗାଟା ନେଇ ଖୁସିରେ ଗରମ ବରାରୁ ଖଣ୍ଡେ ପାଟିରେ ପକାଇଥିଲା । କିନ୍ତୁ ସେ ଖୁସି ତାର କ୍ଷଣସ୍ଥାୟୀ ଥିଲା କାହିଁକି ନା ଠିକ୍ ତାର ପର ମୁହୂର୍ତ୍ତରେ ମିହିର କହିବାକୁ ଲାଗିଲେ-'ମୁଁ ତୁମ ପାଇଁ ଏ ବରା ଆଣିଛି ବୋଲି ବୋଉ ଯେମିତି ନ ଜାଣେ । ଆଇ.ସି.ୟୁରେ ରୋଗୀ ଭଲ ନାହିଁ, ଡାକ୍ତରଖାନାରୁ ଫୋନ୍ ଆସିଥିଲା କହି ମୁଁ ଘରୁ ଆସିଛି । ବରା ଆଣିବା କଥା ଜାଣିଲେ ବୋଉ ଖରାପ ଭାବିବ ।'

ଓଃ ! ସେଥିପାଇଁ ମିତା ଫୋନ୍ କଲାବେଳେ ମିହିର ବାରମ୍ବାର ଫୋନ୍ ରଖି ଦେଉଥିଲେ କାଳେ ଶାଶୁ ଜାଣିପାରିବେ ଭାବି । ମିତା ତଣ୍ଟିରେ ବରା ଖଣ୍ଡଟା ଅଟକିଯାଇଥିଲା । ପାଣି ଗିଲାସେ ପିଇ ମିତା ପ୍ରଶ୍ନ କରିଥିଲା ମିହିରଙ୍କୁ, ସେମାନେ ସନ୍ଧ୍ୟାରେ ନିଦରୁ ଉଠି କିଛି ଖାଇଛନ୍ତି କି ନାହିଁ ? ଉତ୍ତରରେ ମିହିର କହିଥିଲେ ସିଏ ରେଣୁକାରୁ ଦୋସା ଆଣିଥିଲେ ଓ ସମସ୍ତେ ଖାଇଛନ୍ତି । ଏଥର ମିତା କହିବାକୁ ଆରମ୍ଭ କରିଥିଲା ଯେ ସେମାନେ

ସମସ୍ତେ ଭାତ ଖାଇସାରି ଶୋଇଥିଲେ ଓ ନିଦ ଭାଙ୍ଗୁ ଭାଙ୍ଗୁ ପୁଣି ଭୋକ ଲାଗିଲା ଯେ ଦୋସା ଆଣିକି ଖାଇଲେ ଅଥଚ ସିଏ ଏଠି ଖଟି ଖଟି ଅଧା ପ୍ରାଣ ହେଲାଣି ତାକୁ ଭୋକ ଲାଗିବାଟା ସ୍ୱାଭାବିକ ନୁହେଁ କି ? ମିହିର କିଛି ନ କହି ସେଦିନ ଚୁପ୍ ରହିଥିଲେ । ମିତାକୁ ସେତିକି ଭୋକ ଲାଗୁନଥିଲେ ସେ ବରା ଝର୍କା ପଟେ ଫିଙ୍ଗି ଦେଇଥାଆନ୍ତା ।

ସେଦିନ 'ବି' ସିଫ୍ଟ ସାରି ଘରକୁ ଫେରିଲା ବେଳକୁ ରାତି ଦଶଟା ପନ୍ଦର ହୋଇସାରିଥିଲା । ଆୟା ସବୁ ରୋଷେଇ କରି ସାରି ହଟ୍‌କେସ୍‌ରେ ରଖି ଦେଇଥିଲା । ମିହିର ଓ ଶାଶୁ ଶୟନ କକ୍ଷରେ ଟି.ଭି. ଦେଖୁଥିଲେ । ମିଟୁ କମ୍ପ୍ୟୁଟରରେ ଭିଡିଓ ଗେମ୍ ଖେଳୁଥିଲା ଓ ଟିନା ନ ଖାଇ ଶୋଇ ପଡ଼ିଥିଲା । ମିତା ଗୋଡହାତ ଧୋଇ ଆପ୍ରୋନ୍ କାଢ଼ି ଶାଢ଼ୀ ବଦଳାଇ ଖାଇବା ବାଢ଼ିଥିଲା । ସବୁକାମ ସାରି ଶୋଇଲା ବେଳକୁ ରାତି ପ୍ରାୟ ବାରଟା ପାଖାପାଖି ହୋଇ ଯାଇଥିଲା ।

ଆଜି ପୁଣି କେଉଁ ମୁହଁରେ ସିଏ ମିହିରଙ୍କୁ ଜଳଖିଆ ଆଣିବା ପାଇଁ କହିବ ? ମନେ ମନେ ଖୁବ୍ ଅଭିମାନ କଲା ମିତା । ଡାକ୍ତରଖାନାରେ ରୋଗୀ ଦେଖା କାମ ଛାଡ଼ିଦେଲେ ଅନ୍ୟ କୌଣସି କାମ କରନ୍ତିନି ମିହିର । ସବୁ କାମ ସିଏ କରେ । ଡାକ୍ତରଖାନା କାମ ଛାଡ଼ି ରେସନ ଆଣିବା, ପରିବା ଆଣିବା, ପିଲାଙ୍କୁ ପଢ଼ାଇବା, କୁକୁରକୁ ଗାଧୋଇବା ଦେବା ଇତ୍ୟାଦି ସବୁ ମିତା କରେ । ତଥାପି କାହା ତୁଣ୍ଡରୁ ଆହା ପଦଟିଏ ବାହାରେ ନି । ଆଜି ବି ଦୁଇଟାରେ ଘରକୁ ଯାଇ ସବୁ କାମ ସାରିଲାବେଳକୁ ସାଢ଼େ ତିନି, ଚାରି ହେବ । ମିତାର ମୁଣ୍ଡ ଗରମ ହୋଇଗଲା ।

ମିତା ଘରକୁ ଫୋନ୍ ଲଗାଇଲା । ସେପଟୁ ମିହିର ଫୋନ୍ ଉଠାଇଲେ । ପ୍ରଥମେ ମିତା ପଚାରି ବସିଲା ସେମାନେ ସମସ୍ତେ ଖାଇସାରିଲେଣି କି ନାହିଁ । ତାଙ୍କ ଠାରୁ ହଁ ଶୁଣି ସାରି ଶାଶୁଙ୍କୁ ଫୋନ୍ ଦେବାପାଇଁ କହିଥିଲା ମିତା ।

ଶାଶୁ ଫୋନ୍ ଧରିଲା ପରେ ମିତା କହିଲା ସିଏ ସକାଳୁ ଘରୁ କିଛି ଖାଇକି ଆସିନି । ତାକୁ ଏବେ ଭୀଷଣ ଭୋକ ଲାଗୁଛି । ଆଉଟ୍ ହାଉସ୍‌ରୁ କୋଇଲିକୁ ଡାକି ଜଳଖିଆ ଓ ଚା କରାଇ ମିହିରଙ୍କ ହାତରେ ଶାଶୁ ଯେମିତି ଡାକ୍ତରଖାନା ପଠାଇ ଦିଅନ୍ତି । ଏତିକି କହି ଫୋନ୍ ରଖିଲା ମିତା । ଉତ୍ତେଜନାରେ ତାର ଦେହଟା ଥରୁଥିଲେ ବି ଗଡ଼ ଜିଣିଲା ଭଳି ଲାଗୁଥିଲା ତାକୁ ।



# ବନ୍ଧନ

ବୋଉର୍ କଳା ଧଳାର ଲାମିନେଟ୍ କରା ଫଟଟି ଯେମିତି ପ୍ରତ୍ୟେକ ଦିନ ସକାଳୁ ଉଠୁ ଉଠୁ ଦେଖିବି ସେଥିପାଇଁ ତାକୁ ମୋ ଶୋଇବା ଘରର ପୂର୍ବ ପଟ କାନ୍ଥରେ ଲଗାଇଥିଲି । ବୋଉର ଦଶାହ କାମ ସାରି ଭୁବନେଶ୍ୱର ଫେରି ଆସିଲା ପରେ ନୂଆ ପୁରୁଣା ଆଲବମ୍ କାଢ଼ି ଫଟଟିଏ ବାଛିଥିଲି, ଯେଉଁ ଫଟଟି ଥିଲା ପ୍ରାୟ ତିରିଶ ବତିଶ ବର୍ଷ ଆଗର । ବାପାଙ୍କର ଅବସର ନେବା ବର୍ଷର । ସେଇଟା ଥିଲା ବାପା ବୋଉଙ୍କର ପ୍ରଥମ ଯୁଗଳ ଫଟ । ଅବଶ୍ୟ ପରେ ବାପା ବୋଉଙ୍କ ଅନେକ ଫଟ ଏକାଠି ଉଠା ହୋଇଛି । ସବୁ ପ୍ରାୟ ଘରେ ଉଠା ହେଇଛି ଓ ଉଠାଇଛନ୍ତି ପୁଅ, ବୋହୂ, ନାତି ନାତୁଣୀ ଏବଂ ଝିଅ ଜୋଇଁ ମାନେ । ତା' ଭିତରୁ ଅନେକ ମଧ୍ୟ ରଙ୍ଗିନ, କିନ୍ତୁ ସବୁ ଫଟ ଭିତରୁ ମତେ ଏହି ଫଟଟି ସବୁଠାରୁ ଭଲ ଲାଗିଥିଲା । କଳା ଓ ଧଳାର ଅଧା ପୋଷ୍ଟକାର୍ଡ ସାଇଜର । ସେ ଫଟରେ ବାପା ଦିଶୁଥିଲେ ବେଶ୍ ଗମ୍ଭୀର । ଆଖିରେ କଳା ଫ୍ରେମର ମୋଟା ଚଷମା, ପିନ୍ଧିଥିଲେ ହାଲକା ରଂଗର କୋର୍ଟ । ତା' ଭିତରୁ ଧଳା ସାର୍ଟ ଦିଶୁଥିଲା । ବୋଉ ପିନ୍ଧିଥିଲା କଳାବର୍ଡରଥିବା ଧଳା ସମ୍ବଲପୁରୀ ଶାଢ଼ୀ । ସାଦା କରି, ଧଳା ବ୍ଲାଉଜ ସାଙ୍ଗରେ । ମୁଣ୍ଡରେ ଅଧା ପଣତ, କପାଳରେ ଟିପା ଓ ଆଖିରେ ସରୁ କଜଳର ଧାର । ବେକରେ ବିଛାହାର । ବୋଉର କେଶ ଥିଲା ସଂପୂର୍ଣ୍ଣ କଳା ଓ ଆଖିରେ ଚଷମା ନଥିଲା । ବୋଉ ଥିଲା ବାପାଙ୍କ ଠାରୁ ପ୍ରାୟ ପନ୍ଦର ଷୋଳ ବର୍ଷ ଛୋଟ । ତେଣୁ ଫଟୋ ଉଠାଇବା ସମୟରେ ବୋଉର ବୋଧ ହୁଏ ଚଷମା ଦରକାର ପଡି ନଥିଲା । ବାପା ବସିଥିଲେ ବୋଉର ଡାହାଣ ପଟେ, ବୋଉକୁ ଲାଗି କରି । ବାପାଙ୍କ ମୁହଁରେ ଛୋଟ ଛୋଟ ଶ୍ମଶ୍ରୁ । ବାପାଙ୍କ କେଶ ଓ ଶ୍ମଶ୍ରୁ ଉଭୟ ଥିଲା ଅଧାକଳା ଓ ଅଧାଧଳା । ବାପାଙ୍କର ସାମାନ୍ୟ କୁଞ୍ଚୁକୁଞ୍ଚିଆ କେଶ ବାପାଙ୍କ ପ୍ରଶସ୍ତ କପାଳର ବାମ ପାଖରେ କିଛି ଅଂଶ ଅଧିକାର କରିଥିଲା । ବୋଉର ମୁହଁ ଦିଶୁଥିଲା ଖୁବ୍ ଉଜ୍ଜ୍ୱଳ, ସ୍ପଷ୍ଟ ମୁହଁରେ ଥିଲା ଈଷଦ୍ ହାସ୍ୟର ଛିଟା । ଫଟଟି ଥିଲା ଉଭୟଙ୍କର ଛାତିଯାକେ । ସେ ଫଟଟି ଷ୍ଟୁଡିଓ ନେଇ ତାର ନେଗେଟିଭ କରାଇ ବୋଉ ଫଟଟିକୁ ବଡ଼ କରାଇ ଆଣିଥିଲି । କିନ୍ତୁ ଫଟଟି ଆଣିସାରି ଘରେ ଟାଙ୍ଗିବା ପରେ ଦେଖିଲି ବୋଉ ମୁହଁର ପୂର୍ବର ପ୍ରଫୁଲ୍ଲତା ହଜିଯାଇଛି ଓ ବୋଉ ବହୁତ ଉଦାସ ଲାଗୁଛି । ସେଥିପାଇଁ ସ୍ତ୍ରୀ ରିନା, ପୁଅ ଜିତୁ ଓ ଶିତୁଙ୍କୁ ଡାକିକି ଫଟଟି ଦେଖାଇଥିଲି ଓ ସେମାନଙ୍କୁ ଏଇ କଥା କହିଥିଲି । ସେମାନେ ହସିଥିଲେ ମୋ କଥା ଶୁଣି ।

ମତେ କିନ୍ତୁ ଲାଗିଥିଲା ବାପାଙ୍କର ଯତ୍ନ ଠିକ୍‌ରେ ନିଆ ହେଉଚି କି ନାହିଁ ସେଥିପାଇଁ ବୋଉ ସେପାରିରେ ଶାନ୍ତିରେ ରହି ପାରୁନି ବୋଧେ । ସେହି କାରଣରୁ ବୋଉ ଯିବା ଆଗରୁ ପ୍ରତ୍ୟେକ ପିଲାମାନଙ୍କୁ ବାରମ୍ବାର କହୁଥିଲା "ବାପା ଲାଗିଲେ, ବାପାଙ୍କୁ ଦେଖିବ" ଏବଂ ସେହି ବାକ୍ୟ ଉଚ୍ଚାରଣ କରୁକରୁ ବୋଉ ଶେଷ ନିଶ୍ୱାସ ତ୍ୟାଗ କରିଥିଲା । ବୋଧହୁଏ ବୋଉ ଭାବୁଥିଲା ସିଏ ଚାଲି ଗଲା ପରେ ସବୁ ପିଲାମାନେ ନିଜ ନିଜ ସଂସାର ନେଇ ବ୍ୟସ୍ତ ରହିବେ ଓ ବାପା ଏକୁଟିଆ ହୋଇଯିବେ । ଘରେ ବାପାଙ୍କ ଯତ୍ନ ନେବା ପାଇଁ ଦୁଇ ଭାଇନା, ଭାଉଜ, ଭାଇଙ୍କ ପିଲାମାନେ ଓ ଚାକର ପୂଝାରୀ ସମସ୍ତେ ଥିଲେ ବି ବୋଉ ଥିଲାବେଳେ ଯେତେଥର କଟକ ଯାଉଥିଲି ଏବେ ତା'ଠାରୁ ଅଧିକ ଥର ମୁଁ ଯାଉଥିଲି । ରାତିରେ ମଝି ଘର ଯୋଡ଼ା ଖଟରେ ବାପାଙ୍କ ପାଖରେ ଶୋଉଥିଲି । ବୋଉ ଥିଲା ବେଳେ ମଧ୍ୟ ମୁଁ ବାପା ବୋଉଙ୍କ ମଝିରେ ଶୁଏ । କେବେ ବୋଉକୁ ଆଉଁଷି ଦିଏ ତ କେବେ ବାପାଙ୍କୁ । ମୁଁ କୋଡପୋଛା ହୋଇଥିବାରୁ ପ୍ରାୟ ମାଟ୍ରିକ୍ ପାସ କରିବାଯାଏ ଏମିତି ଶୋଉଥିଲି ବାପା ବୋଉଙ୍କ ପାଖରେ । ପଚାଶ ବର୍ଷ ବୟସରେ ବି ସେ ଅଭ୍ୟାସ ମୁଁ ଛାଡ଼ି ପାରୁ ନଥିଲି । ସେଥିପାଇଁ ରିନା ମୋ ନାଁ ରଖିଥିଲା 'ବୁଢ଼ା କୁନି ପୁଅ' । ଏବେ ବାପାଙ୍କ ପାଖରେ ଶୋଇଲାବେଳେ ମତେ ଲାଗେ ବୋଉ ବି ଏଇଠି କୋଉଠି ଅଛି । ରାତିରେ ବାପାଙ୍କ ପାଟିରେ ନିଦ ଭାଙ୍ଗିଯାଏ-ଶୁଣେ ବାପା ବିଳି ବିଳେଇ କହୁଛନ୍ତି, 'ଓଃ ଛାଡ ମତେ-ମୋ ସାଙ୍ଗରେ ଲାଗନି ।' ବାପାଙ୍କୁ ନବେ ବର୍ଷ ହୋଇ ଯାଇଥିଲା । ସେଥିପାଇଁ ବୋଧେ ମୁଣ୍ଡ ଠିକ୍ ରହୁନି ଅବା ସ୍ୱପ୍ନ ଦେଖି ଉଆଡୁ ସିଆଡୁ କହୁଛନ୍ତି ଭାବି ବାପାଙ୍କ ଛାତିରେ ହାତ ପକାଉଥିଲି ରାତିଅଧରେ ।

ବାପାଙ୍କର ଓ ଆମ ଭାଇ ଭଉଣୀ ମାନଙ୍କର ବୋଉକୁ ଛାଡ଼ି ରହିବାର ଅଭ୍ୟାସ ହିଁ ନଥିଲା କାହିଁକି ନା ବୋଉ କଟକ ଘର ଛାଡ଼ି କେବେ କୁଆଡେ ଯାଏ ନାହିଁ । ଆଉ ଯଦି ବି ବାଧ୍ୟ ହୋଇ କୋଉ ବାହାଘର ବା ବ୍ରତ ଘର ପାଇଁ କୁଆଡେ ଯାଏ ତା ହେଲେ ବାପା ଆଉ ସେଦିନ ତାଙ୍କ ଉପର ମହଲା ପଢ଼ା ଘରୁ ତଳକୁ ଆସନ୍ତି ନାହିଁ । ଗାଧୁଆ ପାଧୁଆ ଓ ଖାଇବା ସମୟତକ ଛାଡ଼ି ବାକି ସମୟ ସେହି ପଢ଼ାଘରେ ବିତାଇ ଦିଅନ୍ତି । କିନ୍ତୁ ଅନ୍ୟ ଦିନ ଜାଣି ଜାଣି ବୋଉକୁ ଚିଡାଇବେ । ବୋଉ ରାଗି କରି ପାଟି କଲେ ଆମ ଆଡକୁ ଅନେଇ ମୁରୁକି ମୁରୁକି ହସିବେ । ଆମେ ଭାବୁ ବାପାଙ୍କୁ ବୋଧହୁଏ ବୋଉଠୁ ଗାଳି ଖାଇବାକୁ ଭଲ ଲାଗେ । ବାପା ନଥିଲା ବେଳେ ବୋଉର ଆଚରଣ ବି ବଦଳି ଯାଏ । ବାପା ଥିଲେ ରେଭେନ୍‌ସା ମହାବିଦ୍ୟାଳୟରେ ପ୍ରଫେସର । ତେଣୁ ବିଦ୍ୟାଳୟର କାମରେ ବାପାଙ୍କୁ ବହୁତ ଥର ବାହାରକୁ ଯିବାକୁ ପଡେ । କେବେ ବୁର୍ଲା, କେବେ ବିଶ୍ୱଭାରତୀ ତ କେବେ ରାଞ୍ଚି ବା ନେପାଳ । ମୁଁ

ଦେଖେ ସେତେବେଳେ ବୋଉ ବହୁତ ଅନ୍ୟମନସ୍କ ରହେ । ଆଉଦୈବାତ୍ ଯଦି ବାପାଙ୍କର ଆସିବାର ଦିନ ଓଳିଏ ଡେରିହୁଏ ତା' ହେଲେ ବୋଉର ମୁଣ୍ଡ ଖରାପ ହୋଇଯାଏ । ଯେତେବେଳେ ଦେଖ ବୋଉ ଝରକା ପାଖେ ଠିଆ ହୋଇ ଫାଟକ ଆଡକୁ ଚାହିଁଥିବ । କେବେ କେବେ ରାତି ଅଧରେ ନିଦ ଭାଙ୍ଗିଗଲେ ମୁଁ ଦେଖେ ବୋଉ ଝରକା ପାଙ୍କରେ ଅନେଇଛି । ରାତି ଅଧରେ କୌଣସି ବସ ବା ଟ୍ରେନ୍ ନାହିଁ କହିଲେ ବି ଶୁଣିବନି । ସେମିତି ଠିଆ ହୋଇଥିବ । ଆଉ ବାପା ଯେମିତି ପାହାନ୍ତିଆ ବେଳେ ରିକ୍ସାରୁ ଓହ୍ଲାଇବେ ବୋଉ ଆମକୁ ହଲାଇ ଉଠାଇବ 'ଯା-ବାପା ଆସିଲେଣି କବାଟ ଖୋଲିବ ।' ଆଉ ନିଜେ ନଜାଣିଲା ପରି ଖଟରେ ଘୋଡିଘାଡି ହୋଇ ଶୋଇପଡ଼ିବ । ତା' ପର ଦିନ ଯଦି ଆମେ ବାପାଙ୍କୁ କହିବୁ 'ବୋଉ ତମ ପାଇଁ ବ୍ୟସ୍ତ ହେଉଥିଲା । ରାତି ସାରା ଶୋଇନି ।' ବୋଉର ମୁହଁ ପାଟଳ ରଂଗ ଧାରଣ କରେ ଓ ସଂଗେ ସଂଗେ ଉତ୍ତର ଦିଏ 'ହଁ,-ମୋର କାମ ନାହିଁ, ମୁଁ ବ୍ୟସ୍ତ ହେବି ।'

ଆମେ ବଡ ହୋଇଗଲା ପରେ ଦେଖିଛୁ-ବୋଉ ବାପାଙ୍କର କୌଣସି କାମ ନିଜେ କରେନାହିଁ ବରଂ ଅନ୍ୟମାନଙ୍କ ଦ୍ୱାରା କରାଏ । ବୋଧହୁଏ ତାକୁ ଲାଜ ଲାଗେ । ଏମିତି କି ଭାତ ବାଢ଼ିକି ବି ଦିଏନି । ବାପାଙ୍କୁ ପ୍ରାୟ ନାନୀ ମାନେ ବା ପୂଝାରୀ ବାସୁ ବାଢ଼ନ୍ତି । କିନ୍ତୁ ବାପାଙ୍କ ପାଇଁ ବଢ଼ା ହେଉ ହେଉ କଣ ଗୋଟେ ବାହାନା କରି ବୋଉ ନିଶ୍ଚୟ ସେଠାକୁ ଯିବ ଓ ଦେଖିବ ବାପାଙ୍କୁ ସବୁ ଠିକ୍ ଦିଆ ହୋଇଛି କି ନାହିଁ । ବାପା ଯଦି କୋଉ ତରକାରୀ ନଖାଇଲେ ତାଙ୍କ ଉପରେ ଆରମ୍ଭ ହୋଇଯିବ ଗାଳି ବର୍ଷଣ । 'ମା ରାନ୍ଧି ଥିଲେ ସୁଆଦିଆ ହେଇଥାନ୍ତା, ମୁଁ ରାନ୍ଧିଲେ କଣ ସୁଆଦିଆ ହେବ ?' ତା ପରେ ସେଇ ଗାଳିଦେବା ଭିତରେ ଝିଅ ମାନଙ୍କୁ ବରାଦ ଦେଇ କହିବ ଦହି ଟିକେ ଦିଅ, ଘିଅ ଚାମଚେ ଦିଅ, କିଛି ନ ହେଲେ ରସଗୋଲା ଦି'ଟା ଭାତ କଡ଼କୁ ଦିଅ ଇତ୍ୟାଦି ଇତ୍ୟାଦି । ଏମିତି କରି କରି ବୋଉ ବୋଧ ହୁଏ ବାପାଙ୍କର ଭାତ ସାଙ୍ଗରେ ଫଳ ଓ ମିଠା ଖାଇବା ଅଭ୍ୟାସ କରି ଦେଇଥିଲା । ବୋଉ କେବେ ହେଲେ ବାପାଙ୍କୁ ସ୍ନେହରେ ଯାଚି କରି ଖୁଆଇବା ମୁଁ ଦେଖିନି । ବୋଉ ଭାରି ହୁସିଆର ଥିଲା । ବାପାଙ୍କୁ ଆଉ ତରକାରୀ, ଭଜା, ଦବାକୁ କହିବା ଆଗରୁ ଆଗ ସେ ଆଡ଼କୁ ଆମ ଦୃଷ୍ଟି ଆକର୍ଷଣ କରୁଥିଲା, ବାପା କେମିତି ସବୁ ଭାତ, ତରକାରୀ, ଚଟଣୀ ଶେଷ କରି ସାରିଲେଣି ବୋଲି କହି । ଆଉ ବାପା ଯଦି କଲେଜ ଯିବା ସମୟ ହୋଇଗଲାଣି କହି ବୋଉ ଭାତ ଥାଳିରେ ଦେଇଥିବା ଭାତ ଛାଡ଼ି ଉଠିବାକୁ ଚେଷ୍ଟା କରନ୍ତି ବୋଉ ଗର୍ଜନ କରେ 'ସେ ଅଇଁଠା ଭାତ କିଏ ଖାଇବ ? ମାଗଣା ଚାଉଳ ତୁମ ଗାଁରୁ ଆସିଛି ବୋଲି ଭାବୁଛ ?' ତା' ପରେ ଆମକୁ ଆଦେଶ ଦିଏ, ଲିଭିଲା କାଠ ଚୁଲିରେ ବସିଥିବା କ୍ଷୀର ସରଟା ବାପାଙ୍କ

ବଳିଲା ଭାତରେ ପକାଇ ଦେବାପାଇଁ । ସମସ୍ତେ ଭାବନ୍ତି ବୋଉ ଗାଳି ଦେଉଛି ବାପାଙ୍କୁ ଖାଇବା ସମୟରେ ବି । କିନ୍ତୁ ମୁଁ ଜାଣୁଥିଲି ବୋଉ ବାପାଙ୍କ ଖାଇବା ତଦାରଖ କରୁଛି । ବାପାଙ୍କ ପେଟ ଅପୂରା ରହିଗଲା କି ? ବାପାଙ୍କର ଅଭ୍ୟାସ ଥିଲା ଥରକରେ ଥାଳୀରେ ଯେତିକି ଯାହା ଦିଆଯାଇଛି ସେତିକିଇ ଖାଇବେ । ଦ୍ୱିତୀୟଥର ଆଉକିଛି ମାଗିବେନି, ପେଟ ନ ପୂରିଲେ ମଧ୍ୟ ।

ବାପାଙ୍କ ଉପରେ ବୋଉର ଏ ବାହାରିଆ ଗାଳି ମନ୍ଦ ପାଇଁ ବୋଉ ଘରେ, ବାହାରେ, ଓ ବନ୍ଧୁ ବାନ୍ଧବ ମାନଙ୍କ ପାଖରେ ସବୁଠାରେ ବଦନାମ । ସମସ୍ତେ କହନ୍ତି ବୋଉର ବାପାଙ୍କ ପ୍ରତି ଏଇ ଟାଣ ବ୍ୟବହାର ପାଇଁ ଦିନେ ନିଶ୍ଚେ ସିଏ ପସ୍ତେଇବ । ମନ କିନ୍ତୁ ମୋର ବିଦ୍ରୋହ କରି ଉଠେ । ମୁଁ ଜାଣୁଥିଲି ଯେ ବୋଉ ଦିନେ ଏମାନଙ୍କୁ ଭୁଲ ପ୍ରମାଣିତ କରିବ । ବାହାର ଲୋକଙ୍କୁ ଶୁଣିଲେ ସିନା କଷ୍ଟ ଲାଗେ । କିନ୍ତୁ ବୋଉର ଟାଣ କଥା ବାପାଙ୍କୁ ଭଲ ଲାଗେ ବୋଧେ । ନ ହେଲେ ଯଦି କୌଣସି ଦିନ ଯଦି ବୋଉ ପାଟିତୁଣ୍ଡ ନ କରିଛି ବାପାଙ୍କ ଉପରେ, ବାପା ବୋଉଙ୍କ ରଗାଇବା ପାଇଁ ଆମ ପିଲାମାନଙ୍କୁ କହନ୍ତି 'ଆରେ ପିଲେ ଆଜି କ'ଣ ବୋଉ ଘରେ ନାହାନ୍ତି ? ତାଙ୍କ ଦେହ କ'ଣ ଭଲ ନାହିଁକି ? କାଇଁ କିଛି ପାଟି ତୁଣ୍ଡ ଶୁଭୁନି ତ' । ତା ପରେ ଘରେ ଆରମ୍ଭ ହୋଇଯାଏ ନାଟକର ପୁନରାବୃତ୍ତି ଓ ବାପା ତାକୁ ଉପଭୋଗ କରନ୍ତି ।

ପନ୍ଦର ବର୍ଷ ପୂର୍ବେ ବାପାଙ୍କ କାଟାରାକ୍ଟ ଅପରେସନ୍ ପାଇଁ ବଡନାନୀ ରାଉରକେଲା ନେଇ ଯାଇଥିଲେ ସାଂଗରେ ବାପାଙ୍କୁ । ବୋଉ କିନ୍ତୁ ଯାଇ ନଥିଲା । ଝିଅ ଘରକୁ ଯିବାପାଇଁ କୁଣ୍ଠାବୋଧ କରିଥିଲା । ଅପରେସନ ଠିକ୍‌ରେ ହୋଇଥିଲା । ସାତ ଦିନ ଡାକ୍ତରଖାନାରେ ରହି ବାପା ନାନୀ ଘରକୁ ଫେରିଲେ । କିନ୍ତୁ ଭଉଣୀ ଭିଣେଇ ଦୁଇଜଣ ଡାକ୍ତର ହୋଇଥିଲେ ବି ଡରିଯାଇ କଟକ ଫୋନ୍ କଲେ ଶେଷପର୍ଯ୍ୟନ୍ତ । ବଡ ଭାଇନାଙ୍କ ଗାଡ଼ିରେ ବୋଉକୁ ସାଙ୍ଗରେ ଧରି ମୁଁ ରାଉରକେଲା ଯାଇଥିଲି । ଫୋନ୍ ପାଇବା ପରଠାରୁ ବୋଉ ପୁରା ଚୁପ୍‌ଚାପ୍ ହୋଇଯାଇଥିଲା ଓ ପାଟିରେ ପାଣିବି ଦେଇନଥିଲା । ରାତି ଅଧରେ ନାନୀଙ୍କ ଘରେ ପହଞ୍ଚିଲୁ । ବାପାଙ୍କୁ ଦେଖି ବୋଉ ପିଣ୍ଡରେ ପ୍ରାଣ ପଶିଲା । ତାପରେ ଚାଲିଲା ଗାଳି ବର୍ଷଣ ବୋଉର ବାପାଙ୍କ ଉପରେ । 'ତୁମେ କାହିଁକି ଝିଅକୁ ହଇରାଣ କରୁଛ ? ତମେ ତ ପୁରା ଠିକ୍ ଅଛ । ସିଏ ଚାକିରୀ କରିବ, ତା ପିଲାଙ୍କ କଥା ବୁଝିବ ନା ତୁମ ଛଟାଣ ଦେଖିବ ?' ରାତିସାରା ବୋଉ କରିଥିବା ପାଟିତୁଣ୍ଡର ଫଳ ସ୍ୱରୂପ ବାପା ସକାଳୁ ଖଟରୁ ଉଠି ତଗ୍‌ତଗ୍ କରି ଚାଲିବା ଆରମ୍ଭ କରି ଦେଇଥିଲେ ଓ ଦିଶୁଥିଲେ ପୁରା ସତେଜ ଓ ତୋଫା ।

ନାନୀ ହସି ହସି କହିଥିଲେ 'ବାପା, ତୁମର ଏଇ ଗାଳି ଖାଇବା ଔଷଧଟା କମ୍ ହୋଇ ଯାଇଥିଲା । ସେଇଟା ବୋଉ ଛଡା ଆଉ କେହିବି ତୁମକୁ ଦେଇ ପାରିବେନି ।'

ବୋଉ ହଜାରେ କଥା ବାପାଙ୍କ ନାଁରେ କହିବ କିନ୍ତୁ ଅନ୍ୟ କିଏ ଯଦି ବାପାଙ୍କ ନାଁରେ କହିଲା-ସିଏ ଘର ଲୋକ ହେଇଥାଉ ବା ବାହାର ଲୋକ, ପଇସାବାଲା ହେଉନା ପାଓ୍ୱାର ବାଲା ବୋଉ ତାକୁ ଛାଡ଼ିବନି । ଆଉ ଦୈବାତ୍ ଯଦି ସିଏ ବୋଉ ସାମନାରେ ପଡିଗଲା ଆଉ ତାର ରକ୍ଷାନାହିଁ । ଆରମ୍ଭ କରିଦେବ ବର୍ଷଣ-'କେଉଁ ବୁଦ୍ଧିରେ ତୁମେ ଡକ୍ଟର ତ୍ରିପାଠୀଙ୍କ ନାମରେ ଏମିତି କହିଲ ? କାହିଁକି କହିଲ ? ଯିଏ ଜୀବନରେ ମିଛ କ'ଣ ଜାଣି ନାହାଁନ୍ତି, ଅନ୍ୟାୟ ଅନୀତିର ଧାର ଧାରନ୍ତିନି ସେ ଲୋକ ନାଁରେ ତୁମେ କହୁଛ । ତାଙ୍କ ପାଦ ଯେଉଁଠି ରହିବ ତୁମ ମୁଣ୍ଡ ସେଠି ରହିବାର ତୁମର ଯୋଗ୍ୟତା ନାହିଁ' ଇତ୍ୟାଦି ଇତ୍ୟାଦି । ବୋଉ ସେ ଲୋକର ବାର ବଜାଇ ଛାଡେ । ସେ କେମିତି ବୋଉ ଠାରୁ ପାର ପାଇକି ଯିବ ତାକୁ ଆଉ ବୁଦ୍ଧିବାଟ ଦିଶେନି । ବୋଉ ସେମିତି ମୁହଁ ଉପରେ ରୋକ୍‌ଠୋକ୍ କହେ ବୋଲି ଆମ ଭାଇ ଭଉଣୀ ମାନଙ୍କୁ ଲାଜ ଲାଗେ । ଆମେମାନେ ଘର କଣରେ ଲୁଚିଯାଉ । ସେ ଗଲାପରେ ଆମେ କଣରୁ ବାହାରି ବୋଉକୁ କହୁ'ବୋଉ ତୁ କାହିଁକି ସେମିତି କହିଲୁ? ବହୁତ ଅଭଦ୍ରାମି ହେଲା ।' ବୋଉ କହେ 'ନିଶ୍ଚେ କହିବି, ବଞ୍ଚି ଥିଲା ଯାଏ କହବି ।' ଆମେ ହସି ହସି ପଚାରୁ 'ତୁ ତାହେଲେ କାହିଁକି ବାପାଙ୍କୁ ଏତେକଥା କହୁ ?' ସବୁବେଳେ ବୋଉ ସେଇ ଗୋଟିଏ ଉତ୍ତର ଦିଏ 'ତୁମେମାନେ ବୁଝିପାରିବନି ।'

ବୋଉ ଥିଲା ଅତ୍ୟନ୍ତ ରାଗୀ । ତେଣୁ ଶେଷ ବେଳକୁ ତାକୁ ଡାଏବେଟିସ୍ ଓ ହାଇ ବ୍ଲଡ୍‌ପ୍ରେସର ହୋଇଥିଲା । ନିଜର ଯତ୍ନ କେବେ ନିଏ ନି, କାହାର କହିଲା କଥା ବି ମାନେନି । ସେଥିପାଇଁ ଶେଷ ଆଡକୁ ବୋଉର ଷ୍ଟ୍ରୋକ୍ ହୋଇଯାଇ ବାମ ଅଂଶ ପୁରା ଅଚଳ ହୋଇ ପଡିଥିଲା । ପାରାଲିସିସ୍ ହୋଇଗଲା ପରେ ବୋଉ ଆହୁରି ଏକଜିଦିଆ ହୋଇଯାଇଥିଲା ଓ ସବୁବେଳେ ବାପାଙ୍କୁ ଆଖି ସାମ୍ନାରେ ରହିବାକୁ କହୁଥିଲା । ବାପାଙ୍କୁ ପ୍ରାୟ ନବେ ବର୍ଷ ହୋଇଯାଇଥିଲା । ଭଲରେ ଚାଲିପାରୁ ନଥିଲେ । ତେଣୁ କେତେବେଳେ କାଳେ ପଡ଼ିଯିବେ ବୋଲି ତାଙ୍କୁ ତାଙ୍କର ଉପର ପଢ଼ାଘରକୁ ଯିବାକୁ ଦିଆ ହେଉନଥିଲା । ବାପା କିନ୍ତୁ ପୂର୍ବ ଅଭ୍ୟାସ ଯୋଗୁ କେହି ନଦେଖିବା ସମୟରେ ପଢ଼ିବା ପାଇଁ ଉପର ମହଲାକୁ ଚାଲିଯାଉଥିଲେ । ବୋଉ କିନ୍ତୁ ଠିକ୍ ଜାଣିପାରୁଥିଲା ବାପା ଉପର ମହଲାକୁ ଯାଉଛନ୍ତି ବୋଲି । ଖନେଇ ଖନେଇ ଆମମାନଙ୍କ ଉପରେ ପାଟି କରି କହୁଥିଲା ଶିଘ୍ର ବାପାଙ୍କ ହାତ ଧରି ତାଙ୍କୁ ତଳକୁ ଆଣିବା ପାଇଁ । ବାପା ବାହାର ବାରଣ୍ଡାକୁ ଆସିଲେ ବି ବୋଉ ଆମ

ମାନଙ୍କୁ ରଖେଇ ଥୋଇ ଦେଉନଥିଲା । ଯେବେଯାକେ ଆମେ ବାପାଙ୍କୁ ତା ସାମ୍ନାକୁ ନ ଆଣିଛୁ । ପାରାଲିସିସ୍ ହେବା ପରଠାରୁ ବୋଉ ଆଉ ଧଳା ଶାଢ଼ୀ ପିନ୍ଧିବାକୁ ଚାହୁଁ ନଥିଲା । ଧଳା ସମ୍ବଲପୁରୀ ଶାଢ଼ି ପିନ୍ଧେଇବାକୁ ଆଣିଲେ ଫିଙ୍ଗି ଦେଉଥିଲା ଦୂରକୁ ଯଦିଓ ପୂର୍ବରୁ ଧଳା ସମ୍ବଲପୁରୀ ଶାଢ଼ି ଥିଲା ତା'ର ପ୍ରିୟ ।

ତା ପରେ ହଠାତ୍ ଦିନେ ବାପାଙ୍କୁ ଓ ଆମମାନଙ୍କୁ ଛାଡ଼ି ବୋଉ ଆରପାରିକୁ ଚାଲିଗଲା । ଯେଉଁମାନେ ବୋଉ ନାଆଁରେ ଏତେ କଥା କହୁଥିଲେ ସେମାନେ ପଛ କଥା ଭୁଲିଯାଇ କହିବାରେ ଲାଗିଲେ 'ଆହା, କି ଭାଗ୍ୟ ! ଭରପୂର ସଂସାର ଓ ନବେ ବର୍ଷର ବୁଢ଼ାଙ୍କୁ ଛାଡ଼ି ସଗର୍ବେ ଚାଲିଗଲେ !'

ବୋଉର ଶେଷ ଯାତ୍ରା ପାଇଁ ଆୟୋଜନ ଚାଲିଥାଏ । ବୋଉକୁ ହଳଦୀ ଲଗାଇ ଗାଧେଇ ଦିଆଗଲା । ନୂଆ ଅବିର ରଂଗର ସମ୍ବଲପୁରୀ ଶାଢ଼ି ପିନ୍ଧାଇ ଦିଆଗଲା । ପାଦରେ ଅଳତା । କପାଳରେ ଓ ସିନ୍ଥାରେ ସିନ୍ଦୁର, ହାତରେ ନାଲି ଚୂଡ଼ି । ବୋଉକୁ ତଳେ ଶୁଆଇ ଦିଆଯାଇଥାଏ । ବୋଉ ଦିଶୁଥାଏ ରାଣୀ ଭଳିଆ । ବୋଉର ହାତ ଯୋଡ଼ିକରେ ମୁଠେ ମୁଠେ ରକ୍ତ ରଂଗର ଚୂଡ଼ି । ହାତ ଯୋଡ଼ିକ ଥାଏ ଜଂଘ ଉପରେ । ହିନ୍ଦୁ ନିୟମ ଅନୁସାରେ ବାପାଙ୍କୁ ଡକାହେଲା ବୋଉକୁ ସିନ୍ଦୂର ପିନ୍ଧାଇବା ପାଇଁ । ସିନ୍ଦୂର ପିନ୍ଧାଇଲା ପରେ ବାପାଙ୍କ ଅନୁମତି ନେଇ ବୋଉକୁ ନିଆ ଯିବ ସ୍ୱର୍ଗଦ୍ୱାର । ବାପା ଠୁକ୍ ଠୁକ୍ ହୋଇ ଚାଲି କି ଆସିଲେ । ଠିଆ ହେଲେ ବୋଉ ପାଖରେ । ବାପାଙ୍କ ପାଦ ଯୋଡ଼ିକ ବୋଉ ଜଂଘ କଡ଼ରେ । ବାପା ହାତରେ ସିନ୍ଦୂର ନେଇ ବୋଉର କପାଳରେ ଓ ସିନ୍ଥିରେ ଦେଲେ । ଆଉ ଠିକ୍ ସେତିକି ବେଳେ ବୋଉର ଡାହାଣ ହାତଟି ତା ଜଂଘରୁ ଖସି ବାପାଙ୍କ ପାଦ ଉପରେ ପଡ଼ିଗଲା । ଚକିତ ହେଲୁ ସମସ୍ତେ... ସେତେବେଳକୁ ବୋଉର ମୃତ୍ୟୁହେବାର ତିନି ଚାରି ଘଣ୍ଟା ହୋଇ ସାରିଥାଏ ।

ବାପା ମୋର ଥିଲେ ବିଲାତ ଫେରନ୍ତା ଓ ଅସାଧାରଣ ବ୍ୟକ୍ତିତ୍ୱର ଅଧିକାରୀ । କିନ୍ତୁ ବୋଉ ଥିଲା ଜଣେ ସାଧାରଣ ଗୃହିଣୀ ଯିଏ କି ଚାଟଶାଳୀ ବି ଯାଇ ନଥିଲା । କିନ୍ତୁ ବାପାଙ୍କ ପାଇଁ ବୋଉ ଥିଲା ଏକ ବିରାଟ ଖମ୍ବ ଯାହା ଉପରେ ବାପା ଲଟେଇ ଆକାଶ ଛୁଇଁବାର ପ୍ରୟାସ କରିଥିଲେ । ବୋଉ ଚାଲିଗଲା ପରେ ବାପା ଖୁବ୍ ଚୁପ୍‌ଚାପ୍ ହୋଇଯାଇଥିଲେ । ବାପାଙ୍କ ଖାଇବା ମଧ୍ୟ ବହୁତ କମି ଯାଇଥିଲା । କେବେକେବେ ବୋଉର ନାଁ ଧରି କହୁଥିଲେ 'ସୁରେଖା ରାଣୀ ଆଗ ଚାଲିଗଲେ' । ଓଠ ଫଟାଇ କୁନି ପିଲାଙ୍କ ପରି ବାପା କାନ୍ଦୁଥିଲେ । ବୋଧହୁଏ ବୋଉର ଗାଳି ଥିଲା ବାପାଙ୍କ ପାଇଁ ପ୍ରେରଣାର ଉତ୍ସ । ତେଣୁ ବୋଉ ଯିବାର

ମାତ୍ର ଆଠମାସ ପରେ ହଠାତ୍ ବାପା ଚାଲିଗଲେ । ସ୍ୱର୍ଗଦ୍ୱାରର ଯେଉଁ ସ୍ଥାନରେ ବୋଉକୁ ଦାହ କରା ହେଉଥିଲା ଠିକ୍ ସେହି ଯାଗାରେ ବାପାଙ୍କୁ ଦାହ କରାଗଲା । ଆଉ ଚାରିମାସ ପରେ ବୋଉର ଶ୍ରାଦ୍ଧ ହୋଇଥାଆନ୍ତା । ଏବେ ଆଉ ଶ୍ରାଦ୍ଧ ଦିଆ ହେବନି । ବାପାଙ୍କ ସାଙ୍ଗରେ ବୋଉକୁ ଶ୍ରାଦ୍ଧ ଦିଆଯିବ ବାପାଙ୍କ ଶ୍ରାଦ୍ଧ ବାର୍ଷିକୀରେ ।

ବାପା ଚାଲିଗଲା ପରେ ପୁଣି ଆଲବମ ଖୋଲି ଦେଖିଲି ତାଙ୍କର କେଉଁ ଫଟଟି ବଡ଼କରି ଲାମିନେଟ୍ କରିବି । ମନେପଡ଼ିଲା ବାପା ବୋଉଙ୍କର ଅବସର ସମୟରେ ଉଠା ଫଟର ନେଗେଟିଭ ଅଛି । ସେଇ ନେଗେଟିଭରୁ ବୋଉ ଫଟ ସାଇଜ୍‌ର ବାପାଙ୍କ ଫଟ ବି ଲାମିନେଟ୍ କରି ଆଣିଲି । ସେଦିନ ଫଟ ଆଣି ଘରେ ପହଞ୍ଚିଲା ବେଳକୁ ଘରେ ଅନେକ ଅତିଥି । ଅତିଥିମାନଙ୍କୁ ଚର୍ଚ୍ଚା କରି ପଠାଇବା ପରେ ବହୁତ କ୍ଳାନ୍ତ ଲାଗୁଥିଲେ ବି ବାପାଙ୍କ ଫଟଟିକୁ ବୋଉ ଫଟର ଡାହାଣ ପଟେ କଣ୍ଟା ମାରି ଲଗାଇଲି ।

ତା' ପରଦିନ ସକାଳୁ ନିଦ ଭାଙ୍ଗିଲା । ପୂର୍ବ ଅଭ୍ୟାସ ମତେ ପୂର୍ବପଟ କାନ୍ଥକୁ ଚାହିଁଲି । ଆଖି ପଡ଼ିଲା ବାପାଙ୍କ ଫଟରେ । ଦିଶୁଛନ୍ତି ଦାର୍ଶନିକ ଭଳି । ବାପାଙ୍କ ଫଟକୁ ଲାଗି ବାମ ପାଖରେ ବୋଉର ଫଟ । କିନ୍ତୁ ବୋଉର ମୁହଁଟି ଆଉ ପୂର୍ବପରି ଉଦାସିଆ ଦିଶୁନଥିଲା । ତା' ମୁହଁରେ ଫେରିଆସି ଥିଲା ସେଇ ପୁରୁଣା ହାସ୍ୟର ଛିଟା ।

❑❑❑

# ସ୍ମୃତି

ଦୀର୍ଘ ପଚିଶ ବର୍ଷର ସମ୍ପର୍କକୁ ମିହିର କେମିତି ଗୋଟିଏ ମୁହୂର୍ତ୍ତରେ ଭୁଲିଯିବେ ? କେତେବେଳେ ଏତେ ଗୁଡାଏ ବର୍ଷ ପାର ହେଇଗଲା ସିଏ ଜାଣିପାରିଲେନି । ସମୟର କୁଆଡେ ଡେଣା ଥାଏ ଓ ସେହି ଡେଣାକୁ ଧରି ରଖିବାର ଶକ୍ତି କାହାରି ନାହିଁ । ଶୁଖିଲା ବାଲିକୁ ହାତ ମୁଠାରେ ଧରି ରଖିବାକୁ ଯେତେ ଚେଷ୍ଟା କଲେ ବି ସିଏ ଯେମିତି ଅନାୟାସରେ ହାତରୁ ଖସିଯାଏ ଠିକ୍ ସେମିତି ସମୟ ଖସି ଚାଲିଯାଏ ହାତ ମୁଠାରୁ ।

ପଚିଶ ବର୍ଷ ତଳର ସ୍ମୃତି ତାଙ୍କର ଆଖି ଆଗରେ ଭାସି ଉଠିଲା । ଡାକ୍ତରୀ ପାସ କରି ସରକାର ଚାକିରୀରେ ସିଏ ଯୋଗଦେବାର ଯେଉଁଦିନ ଦୁଇମାସ ପୂରା ହେଇଥିଲା ସେଇଦିନ । ସେଇଦିନ ସଂଧ୍ୟାରେ ଡାକ୍ତର ଖାନାରୁ ଫେରିବା ବେଳେ ତାକୁ ସାଂଗରେ ଘରକୁ ଆଣି କି ଆସିଥିଲେ । ସେହି ଦିନଟି ଥିଲା ମେ ମାସର ପହିଲା ତାରିଖ ।

ମିହିର କବାଟ ଠକ୍ ଠକ୍ କଲାପରେ ବାଟ ଘରେ ଖବର କାଗଜ ପଢୁଥିବା ବାପା ଦୁଆର ଖୋଲିଥିଲେ ଓ ତାକୁ ମିହିରଙ୍କ ପାଖରେ ଦେଖି ପ୍ରଶ୍ନବାଚୀ ଆଖିରେ ମିହିରଙ୍କୁ ଚାହିଁ ରହିଥିଲେ । ମିହିର ବାପାଙ୍କୁ କ୍ଷମା ମାଗିବା ପୂର୍ବରୁ କ୍ଷଣକୋପୀ ବାପା ଉଗ୍ରମୂର୍ତ୍ତି ଧାରଣ କରି ଗର୍ଜି ଉଠି କହିଥିଲେ-'ଟଙ୍କା ରୋଜଗାର କରିବାରୁ ମୁଣ୍ଡକୁ ହାତ ପାଇ ଗଲାଣି । କୌଣସି ନିଷ୍ପତ୍ତି ନେବା ଆଗରୁ ଘରେ ଗୁରୁଜନ ମାନଙ୍କ ଅନୁମତି ତୋର' ବୋଧେ ଦରକାର ପଡୁନି । ଆଉ ବର୍ଷେ ଦୁଇ ବର୍ଷ ଅପେକ୍ଷା କରି ପାରିଲୁନି । ଆଗକୁ ସାନ ଭଉଣୀର ବିଭାଘର ଟା ଅଛି ।''

ବାପାଙ୍କର ଉଚ୍ଚସ୍ୱର ର ଚିତ୍କାର ଶୁଣି ରୋଷେଇ ଘରେ କାମ କରୁଥିବା ଜେଜେମା ଓ ବୋଉ ବାହାରି ଆସିଥିଲେ । ବାପାଙ୍କୁ ଝଡ଼ନା ଦେଇ ମା କହିଥିଲେ-'ହଉ ଯାହା ତ ହେଲାଣି, ତୁ ଆଉ ତା ଉପରେ ରିଷା ହୁଅନା । ଏତେ ବଡ ପିଲା ଉପରେ ଏମିତି ରାଗନ୍ତି ?''

ବାପାଙ୍କ ରାଗ ଦେଖି ବୋଉ ପାଟି ନ ଫିଟାଇ ଚୁପ୍ ରହିଥିଲା । ପାଟି ତୁଣ୍ଡ ଶୁଣି ସାନ ଭଉଣୀ ମିନି ଓ ଛୋଟ ଭାଇ ଦୁଇଜଣ ପଢ଼ାଘରୁ ବାହାରି ଆସି ତାଟକା ହୋଇ ଅବିଶ୍ୱାସ ଭରା ଆଖିରେ ମିହିରଙ୍କୁ ଚାହିଁ ରହିଥିଲେ ।

ଜେଜେ ମାଙ୍କ କଥା ଶୁଣି ବାପା ତାଙ୍କ ଶୋଇବା ଘର ଭିତରକୁ ଚାଲିଯାଇଥିଲେ ଓ ମିହିର ସେଇ ମୁହୂର୍ତ୍ତଟିକୁ ହାତଛଡା ନ କରି ଜେଜେ ମା' ଙ୍କ ପାଖକୁ ଚାଲିଯାଇ ନାଚ

ସ୍ୱରରେ କହିଥିଲେ-'ମା, ତୁମ କାମ କମ୍ କରାଇବା ପାଇଁ ମୁଁ ଯାକୁ ଆଣିକି ଆସିଲି, ଅଥଚ୍ ଦେଖତ ବାପା କେମିତି ରାଗୁଛନ୍ତି ।''

ବଡ ନାତିର ମୁଣ୍ଡଟି ଆଉଁସି ଦେଇ ମା' ହସି ହସି କହିଥିଲେ-ଯାକୁ ଆଣି ତୁ ଯୌତୁକ ପାଇବାର ବାଟ ଟା କିନ୍ତୁ ବନ୍ଦ କରିଦେଲୁ ।

ବାପା ଘର ଭିତରକୁ ଚାଲିଯାଇଥିବାରୁ ମିନିର ସାହାସ ବଢ଼ିଯାଇଥିଲା ଓସିଏ କହିଥିଲା-'ଭାଇନା, ତୁମେ ଆମକୁ ଆଗରୁ କିଛି ସୂଚନା ଦେଇଥିଲେ ଆମେ ଦୁବ ବରକୋଳି ପତ୍ର ଧରି ଦୁଆର ମୁହଁରେ ଠିଆ ହୋଇଥାଆନ୍ତୁ, ଏବେ କିନ୍ତୁ ଏହାକୁ ବିନା ବନ୍ଦାପନାରେ ଘରକୁ ଆଣିବାକୁ ପଡିବ ।'

ତା ପରେ ସମସ୍ତେ ମିଶି ତାକୁ ପାଛୋଟି ଆଣିଥିଲେ ଘର ଭିତରକୁ । ନିଃଶବ୍ଦରେ ପାଦ ଚିପି ଚିପି । ବାପା ରାଗିଥିଲେ ଯେ !

ଅବଶ୍ୟ ରାତ୍ରିଭୋଜନ ସମୟରେ ବାପାଙ୍କ ରାଗ ଥମି ଯାଇଥିଲା । ପିଢା ଉପରେ ବସି ବାପା ପୁଅ ଦୁଇଜଣ ରୁଟି ସନ୍ତୁଳା ଖାଇଲାବେଳେ ବାପା ତାଙ୍କ ରାଗିବାର କାରଣ ବ୍ୟାଖ୍ୟା କରିଥିଲେ । ସିଏ ତାଙ୍କ ଦରମାରେ କେତେ କଷ୍ଟରେ ଏତେ ବଡ ପରିବାର ର ବୋଝ ବୋହି ଚାଲିଛନ୍ତି । ଶିକ୍ଷକ ଚାକିରୀର ସ୍ୱଳ୍ପ ଦରମାରେ ସିଏ କେତେ ଜଗି ରଖି ଭାବିଚିନ୍ତି ଖର୍ଚ୍ଚ କରନ୍ତି । ସେଇ ଟଙ୍କାରୁ ଯାହା ସଂଚୟ କରି ରଖିଥିଲେ ସେଥିରେ ବଡ଼ ଝିଅର ବାହାଘର କରିଛନ୍ତି ଦୁଇ ବର୍ଷ ଆଗେ । ତେଣୁ ମିହିର ନିଜ ଗୋଡରେ ଠିଆ ହେଲା ପରେ ସିଏ ଆଶା କରିଥିଲେ ତାଙ୍କ ଭାର ମିହିର କିଛି ପରିମାଣରେ ଲଣା କରିବେ-ଅନ୍ତତଃ ମିନିର ବିଭାଘର ଓ ସାନ ଦୁଇଭାଇଙ୍କ ପାଠପଢ଼ା ସରିବା ଯାଏ । ଏଇ ସମୟରେ ମିହିରଙ୍କର ଏ ଅପବ୍ୟୟ ତାଙ୍କୁ ବ୍ୟସ୍ତ କରି ପକାଇଲା । ସେମାନଙ୍କ ଭଳି ନିମ୍ନ ମଧ୍ୟବିତ୍ତ ବର୍ଗର ନିଅଣ୍ଟିଆ ଲୋକମାନଙ୍କ ପାଇଁ ଫ୍ରିଜ୍‌ଟା ଏକ ସୌଖୀନ ଜିନିଷ । ଏବେ ସେଥିରେ ପାଣି ବିନା ଅନ୍ୟ କିଛି ରଖିବାର କ୍ଷମତା ସେମାନଙ୍କର ନାହିଁ । ତେଣୁ କେବଳ ଥଣ୍ଡା ପାଣି ପିଇବା ପାଇଁ ପାଞ୍ଚ ହଜାର ଟଙ୍କା ଏମିତି ପାଣିକୁ ପକାଇ ଫ୍ରିଜ୍‌ଟା କିଣିବା ଯେତିକି ମୂର୍ଖାମି ସେତିକି ହାସ୍ୟାସ୍ପଦ । ଶେଷରେ ବାପା ମିହିରଙ୍କୁ ଉପଦେଶ ଦେଇଥିଲେ ଭବିଷ୍ୟତରେ ଟଙ୍କା ଏମିତି ବରବାଦ ନ କରିବାକୁ ।

ସେ ଦିନ ବାପା ଯାହା ସବୁ କହିଥିଲେ ସେ କଥା କ'ଣ ମିହିର ଜାଣି ନଥିଲେ ? ସେ ଚାହୁଁ ନଥିଲେ ଘରର ସମସ୍ତେ ଏମିତି ଆଡ଼ମ୍ବର ବିହୀନ ଜୀବନ ବିତାନ୍ତୁ । ସେଥିପାଇଁ ତ ସିଏ ଦୁଇ ମାସର ଦରମା ପନ୍ଦରଶହ ଟଙ୍କା ପାଇଲା ପରେ ଆଗରୁ ବୁଝିଥିବା ଦୋକାନୀ ପାଖକୁ

ଯାଇ ହଜାରେ ଟଙ୍କା ଦେଇ ଫ୍ରିଜ୍‌ଟିକୁ ନେଇ ଆସିଥିଲେ । ବାକି ଚାରି ହଜାର ଟଙ୍କା ମାସକୁ ମାସ ଦରମାରୁ କିସ୍ତିରେ କଟିବ ଚାରି ବର୍ଷ ପର୍ଯ୍ୟନ୍ତ । ସିଏ ଭାବିଥିଲେ ଅପ୍ରତ୍ୟାଶିତ ଭାବେ ଫ୍ରିଜ୍‌ଟିଏ ଘରକୁ କିଣାହୋଇ ଆସିବା ଦେଖି ସମସ୍ତେ ଖୁସିରେ ନାଚି ଉଠିବେ !

ତା' ପରଦିନ ବାପା ସକାଳୁ ସ୍କୁଲ ଚାଲିଯିବା ପରେ ସମସ୍ତେ ନିଜ ନିଜର ଖୁସି ବ୍ୟକ୍ତ କରିଥିଲେ । ସବୁଠାରୁ ବେଶି ଆନନ୍ଦିତ ହୋଇଥିଲେ ଜେଜେ ମା । ତାଙ୍କ ଗୋଡ ସେ ଦିନ ପାଞ୍ଚ ହାତରେ ପଡୁଥିଲା ଓ ମୁହଁରେ ହସ ଲାଗି ରହିଥିଲା । କେଉଁଠାରେ ଫ୍ରିଜ୍‌ଟି ରହିବ ସେଥିପାଇଁ ଚାଲିଲା ଆଲୋଚନା ।

ବୋଉ କହିଲା ରୋଷେଇ ଘରେ ରଖିଲେ ତାକୁ ପରିବା ପତ୍ର କାଢ଼ିବା ପାଇଁ ସୁବିଧା ହେବ ।

ବୋଉର କଥା କାଟ ଖାଇଗଲା । କାହିଁକି ନା କାଠ ଚୁଲ୍ଲୀର ଧୂଆଁରେ ଫ୍ରିଜ୍‌ର ରଂଗ ଖରାପ ହୋଇଯିବ ।

ବାପାଙ୍କ ଶୋଇବା ଘରେ ରଖିବା-କହିଲା ମିନି । ବାପାଙ୍କୁ ଭୟ କରୁଥିବା ସାନ ଭାଇ ଦୁଇଜଣ ମଙ୍ଗି ନଥିଲେ । ସେଠି ରହିଲେ ବାପାଙ୍କ ଡରରେ ପାଣି ପିଇବାକୁ ଯାଇ ପାରିବେନି ସେମାନେ ।

ଶେଷରେ ସମସ୍ତଙ୍କ ସୁବିଧା କୁ ଆଖି ଆଗରେ ରଖି ଫ୍ରିଜ ରହିଲା ଶୋଇବା ଘରର ଭିତର ପଟକୁ ଥିବା ଜାଫ୍ରି ଲଗା ବାରଣ୍ଡାରେ । ବୋଉ ର ରୋଷେଇ ଘରକୁ ପାଖ ଓ ଅନ୍ୟମାନଙ୍କୁ ପାଣି ପିଇବା ପାଇଁ ସୁବିଧା ।

ଫ୍ରିଜ୍‌ଟି ଚାଲିବା ପରେ ମିନି ତା ଉପରେ ସୂଚୀକାମ ହୋଇଥିବା ସୁନ୍ଦର କନାଟିଏ ପକାଇଦେଇଥିଲା । ଅନ୍ୟମାନେ ଘରେ ଏଣେତେଣେ ଅବ୍ୟବହୃତ ହୋଇ ପଡିଥିବା କାଚ୍ ବୋତଲ ସବୁ ଗରମ ପାଣି ଓ ସାବୁନରେ ସଫାକରି ସେଥିରେ ଓ ବରଫ ଟ୍ରେରେ ପାଣି ଭରି ଫ୍ରିଜ୍‌ରେ ରଖିଥିଲେ । ବୋଉ ରାତିରେ ରନ୍ଧାହେବାକୁ ଥିବା ପରିବା ଆଣି ରଖିଥିଲେ ଓ ଶେଷରେ ଜେଜେ ମା ତାଙ୍କର ଶୁଖିଯାଉଥିବା ପାନ ପତ୍ରକୁ ଓଦା କନାରେ ଗୁଡାଇ ଆଣି ତା' ଭିତରେ ସାଇତି ରଖିଲେ । ଏ ସବୁ କଲା ପରେ ସମସ୍ତେ ଫ୍ରିଜ୍‌ଟିକୁ ବେଢ଼ି ରହିଥିଲେ ଓ ପ୍ରତ୍ୟେକ ପାଞ୍ଚ ମିନିଟ୍‌ରେ ଜଣ ଜଣ କରି ଫ୍ରିଜ୍‌ଟିକୁ ଖୋଲି ବୋତଲରେ ହାତ ମାରି ଦେଖୁଥିଲେ ପାଣି ଥଣ୍ଡା ହେଲାଣି ନା ନାହିଁ । ଅଗତ୍ୟା ମିହିରକୁ କହିବାକୁ ପଡିଥିଲା ଏମିତି ବାରମ୍ବାର ଖୋଲିଲେ ତାର କମ୍ପ୍ରେସର ଜଳିଯିବ ।

ଫ୍ରିଜ୍ ଆସିବା ପରଦିନ ଠାରୁ ସମସ୍ତଙ୍କ ସାଂଗ ମାନେ ଆସୁଥିଲେ ଥଣ୍ଡା ପାଣି ପିଇବା ପାଇଁ । ଘରକୁ ଅତିଥି ମାନେ ଆସିଲେ ବୋଉ ସେମାନଙ୍କୁ ବରଫ ପକାଇ ଲେମ୍ବୁ ସରବତ କରି ଦେଉଥିଲା ଓ ଜେଜେମା ଲକ୍ଷେ ଟଙ୍କାର ହସଟେ ହସି କୋଉ ଛଟକରେ କହି ଦେଉଥିଲେ ତାଙ୍କ ନାତି ପ୍ରଥମ ଦରମା ପାଇ ଘରକୁ ଫ୍ରିଜ୍‌ଟିଏ ଆଣିଛି ।

ବାପାଙ୍କ କହିବା ଠିକ୍ ଥିଲା । ମିହିର ଏତେ ଗୁଡେ ଟଙ୍କା ଦେଇ ଫ୍ରିଜ୍ ଟା ସିନା ନେଇ ଆସିଥିଲେ । ସେଥିରେ ପାଣି ଛଡା ଅନ୍ୟ କୌଣସି ଜିନିଷ ରଖାହେଉନଥିଲା । ସେତେବେଳେ ଘରକୁ ଫଳ ଆସିବା ତ ସ୍ୱପ୍ନ ଥିଲା । କାହାର କେବେ ଜର ହେଲେ କମଳା ବା ନାସ୍‌ପାତି ଅଣାହେଉଥିଲା । ବାକି ରହିଲା ପରିବା ରଖିବା କଥା । ସେତେବେଳେ ସମୟର ଏତେ ଅଭାବ ନ ଥିଲା, ତେଣୁ ଏବେର ଭଳି ସପ୍ତାହକୁ ଥରେ ପରିବା କିଣା ନ ହେଇ ପ୍ରତ୍ୟେକ ଦିନ ସାମ୍‌ନା ପରିବା ବଜାରରୁ ସଜ, ତଟ୍‌କା ପରିବା ଅଣା ହେଉଥିଲା । ଫ୍ରିଜ୍ କିଣା ହେଲା ପରେ ବି ବାପା ପୁରୁଣା ଦିନର ଅଭ୍ୟାସଟିକୁ ଛାଡ଼ି ପାରି ନଥିଲେ । ଯେତେ ପରିବା ଆଣିଲେ ବି ବଡ ପରିବାର ହେତୁ ରାତି ବେଳକୁ ପରିବା ଡାଲା ଖାଲି ହୋଇଥାଏ । ଯେଉଁଠି ପରିବା ଅଣ୍ଟୁ ନଥିଲା ସେଠି ତରକାରୀ କେମିତି ବଳିବ ଯେ ଫ୍ରିଜ୍‌ରେ ରହିବ ? ସମସ୍ତଙ୍କୁ ହିସାବରେ ତରକାରୀ ବାଢ଼ିଲେ ମଧ ଜେଜେ ମା ଓ ବୋଉ ଖାଇଲାବେଳେ କେତେଥର କଡେଇ ଖାଲି ହେଇଯାଇଥାଏ ଯେ ସେମାନେ ଆଳୁ ବା ବଡି ପୋଡ଼ି କଂଚା ଲଙ୍କା, ଆଚାର ଲଗାଇ ଭାତ ଖାଆନ୍ତି । ସେତେବେଳେ ଫ୍ରିଜ୍‌ରେ ଆଇଁଷ ରହିବାର ପ୍ରଶ୍ନ ନଥିଲା । ଜେଜେ ମା ଘରେ ଅଣ୍ଡା ପୂରେଇ ଦେଉ ନଥିଲେ, ମାଛ ଆସିଲେ ବୋଉ ପ୍ରଥମରୁ ଜଣଙ୍କ ପିଛା ଗୋଟିଏ ଗୋଟିଏ ଖଣ୍ଡ କରି ହିସାବରେ କାଟିଥାଏ । ବୋଉ ଭାଗରେ ସବୁବେଳେ ମୁଣ୍ଡ ଟି ହିଁ ପଡୁଥିଲା । ପ୍ରତ୍ୟେକ ରବିବାର ଦିନ ଆସୁଥିବା ଅଧକେଜି ମାଂସର ଅବସ୍ଥା ବି ସେମିତି । ବେଶ କିଛି ଆଳୁ ପକାଇ ବୋଉ ମାଂସ ଝୋଳ ରାନ୍ଧୁଥିଲା । ଖାଇଲାବେଳେ ଆଳୁ ଓ ଝୋଳ ସହିତ ମିହିରଙ୍କୁ ଦିଆ ହେଉଥିଲା ସେଥିରେ ଥିବା କଲିଜା ଦୁଇଖଣ୍ଡ, ମିନିକୁ ଚର୍ବି, ସାନ ଦୁଇ ଭାଇଙ୍କୁ ନଳି ଇଗା ହାଡ ସହିତ ଲାଗିଥିବା ମାଂସ ଓ ବାପାଙ୍କୁ ବିନା ହାଡର ମାଂସ ଦୁଇଖଣ୍ଡ । ଶେଷରେ ବୋଉ ପାଇଁ ରହିଯାଉଥିଲା ଆଳୁ, ଟିକିଏ ଝୋଳ ଓ ବିନା ମାଂସର ହାଡ । ଫ୍ରିଜ୍‌ରେ ତେଣୁ ମାଂସ ରଖିବାର ପ୍ରଶ୍ନ ହିଁ ଉଠୁ ନଥିଲା ।

ସେଥିପାଇଁ ମିହିର ବଜାରରୁ ବାଇଗଣ ପଲେଇ ଆମ୍ବ କିଣି ଆଣନ୍ତି ଖରାଦିନେ । ଜେଜେ ମା ଭାତ ଖାଇସାରି ସେଇ ଥଣ୍ଡା ଆମ୍ବରୁ ଚ଼ିରୁଡାଏ ଖାଇ କେତେ ଖୁସି ହୁଅନ୍ତି । ଖୁସିସବୁ ତାଙ୍କ ଆଖିରୁ ଲୁହ ହୋଇ ଖସିପଡେ । ଲୁଗା କାନିରେ ସେ ଆନନ୍ଦାଶ୍ରୁ ପୋଛୁ ପୋଛୁ ବଡ ନାତିକୁ ଆଶୀର୍ବାଦ କରି ପକାନ୍ତି ।

ଫ୍ରିଜ୍‌ଟି ଆସିଲା ପରଠାରୁ ରୋଷେଇ ଘର ଖୋଲା ବାରଣ୍ଡାରେ ବାଲି ଉପରେ ଥୁଆ ହୋଇଥିବା ସୁରେଇଟିକୁ ଆଉ କେହି ଆଡ ଆଖିରେ ଚାହୁଁନଥିଲେ । ବୋଉ ପାଣି ଭରିଲେ ବି ବାପାଙ୍କ ଛଡା ଅନ୍ୟ କେହି ସେଇ ପାଣି ପିଉନଥିଲେ । ଶେଷରେ ବାପା ତାକୁ ତାଙ୍କ ସ୍କୁଲର ପିଅନକୁ ଦେଇଦେଲେ ।

ଯା ଭିତରେ ସମୟ ସାଂଗେ ଘରର ଅନେକ ପରିବର୍ତ୍ତନ ହେଇଛି । ମିନିର ବିବାଘର, ଜେଜେ ମା'ଙ୍କ ସ୍ୱର୍ଗବାସ, ମିହିରଙ୍କ ବାହାଘର, ସାନ ଦୁଇଭାଇଙ୍କର ପାଠପଢ଼ା ସରିବା ପରେ ସେମାନଙ୍କର ଅନ୍ୟ ସହରରେ ଚାକିରୀ ଓ ବାହାଘର । ଶେଷରେ ପାଞ୍ଚବର୍ଷ ଆଗେ ପ୍ରଥମେ ବୋଉ ଓ ତାର ଆଠ ମାସ ପରେ ବାପା ଆରପାରିକୁ ଚାଲିଯାଇଛନ୍ତି ।

ସମୟ ଅନୁସାରେ ମିହିର ମଧ୍ୟ ଆଗକୁ ବଢ଼ି ବୃହତ୍‌ରୁ ବୃହତ୍ତର ଘରକୁ ଆସିଛନ୍ତି ଓ ତା ସାଂଗରେ ତାଳ ଦେଇ ଫ୍ରିଜ୍‌ରେ ରହିବା ଜିନିଷ ମଧ୍ୟ ବଦଳିଛି । ନୂଆ ନୂଆ ଫ୍ରିଜ୍ ଆସିଲାବେଳେ ଖରାଦିନେ ବୋଉ ତା ଭିତରେ ରଖୁଥିଲା ବେଲ ପଣା, ରଜରେ ପୋଡପିଠା, ପ୍ରଥମାଷ୍ଟମୀରେ ହଳଦୀ ପତ୍ର ପିଠା, ମାର୍ଗଶିର ଗୁରୁବାରରେ କାକରା ପିଠା ଓ ଅଟକାଳି । ଆଜିକାଲି ସେଥିରେ ରହେ ଫଳ, ଫଳ ରସ, ମୃଦୁ ପାନୀୟ, ଲହୁଣୀ, କେକ୍, ଚକୋଲେଟ୍, କଂଚା କୁକୁଡା ମାଂସ, ବିନା କାତିର ଚିଙ୍ଗୁଡି ମାଛ ଓ ଆଇସ୍‌କ୍ରିମ୍ । ମିହିରଙ୍କର ମନେପଡେ ପ୍ରତ୍ୟେକ ମାସରେ ଦରମା ପାଇଲା ପରେ ଫେରିବା ବାଟରେ ସିଏ କଷ୍ଟାର୍ଡ ପାଉଡ଼ର କିଣି ଆଣନ୍ତି । ବୋଉ କଷ୍ଟାର୍ଡ ତିଆରି କରି ସମସ୍ତଙ୍କ ପାଇଁ ସମାନ ଭାଗ କରି ଛୋଟ ଛୋଟ ଗିନାରେ ସେଥିରେ ରଖି ଦେଇଥାଏ । ସଂଧ୍ୟାରେ ଫ୍ରିଜ୍ ରୁ କାଢ଼ି ତା ଉପରେ ପାଚିଲା କଦଳୀ କାଟି ସଜେଇ ଆଣି ଖାଇବାକୁ ଦିଏ । କେତେବେଳେ ଗୋଲାପି ରଂଗ ର ତ କେତେବେଳେ କମଳା ରଂଗର କଷ୍ଟାର୍ଡ । ବୋଉ ହାତରେ ସେଇ ଅଳ୍ପ କ୍ଷୀର ପଡ଼ି ତିଆରି ହୋଇଥିବା କଷ୍ଟାର୍ଡର ସ୍ୱାଦ ଏବେର ଆଇସ୍‌କ୍ରିମ ସ୍ୱାଦଠାରୁ ଅର୍ଣ୍ଣ ଢେର ଅଧିକ ।

ସମୟର ପ୍ରଭାବ ରେ ମଣିଷର ଗୋରା ରଂଗ ଧୀରେ ଧୀରେ ମଳିନ ପଡିଗଲା ପରି ଫ୍ରିଜ୍‌ଟିର ଦୁଧ ରଂଗ ବଦଳି ଯାଇ ଘିଅ ରଂଗ ହେଇଯାଇଥିଲା ଓ ଠାଏ ଠାଏ ରଂଗବି ଛାଡ଼ିଯାଇଥିଲା । ସେଥିରେ ବ୍ୟଥିତ ହୋଇ ପତ୍ନୀ ମିତା ତାକୁ ଈଷତ ନୀଳ ରଂଗ କରାଇ ଦେଇଥିଲେ । ବୟସ୍କ ଲୋକ ଚୁଟିରେ ରଂଗ ମାରି କମ୍ ବୟସର ଦିଶିଲା ଭଳି ଫ୍ରିଜ୍‌ଟିର ବୟସ ମଧ୍ୟ ହଠାତ୍ କମିଗଲା ପରି ଲାଗିଥିଲା ।

ଫ୍ରିଜ୍‌ର ବାହାରଟା ସିନା ରଂଗ ମାରି ଠିକ୍ କରିଦିଆଗଲା ହେଲେ ଭିତରର ଅଂଶ ସବୁ ଖରାପ ହେବାରେ ଲାଗିଥିଲା । ବୁଢ଼ା ଲୋକଙ୍କ ଦାନ୍ତ ପଡ଼ିଲା ପରି କେଉଁଦିନ ପରିବା

ବାକ୍ସର ଢ଼ାଙ୍କୁଣୀ ଭାଂଗିଗଲାଣି ତ କେଉଁଦିନ ବରଫ ଥାକ ତଳର ଟ୍ରେ । ତା ପରେ ଦିନେ ଜଙ୍କ୍ ଲାଗିଯାଇ ବଲ୍ବ ଟା ବି ଝଡ଼ି ଯାଇଥିଲା । ମିହିରଙ୍କୁ ଲାଗିଥିଲା ସତେଯେମିତି ଫ୍ରିଜ୍‌ଟି ସେହିଦିନଠାରୁ ଅନ୍ଧ ହେଇଗଲା । ସେଇ ଭଂଗା ଅଂଶ ଗୁଡିକ ବଦଳାଇବା ପାଇଁ ମିହିର ଚେଷ୍ଟା କରିଥିଲେ ବି କେଉଁଠାରେ ସେ ଗୁଡିକ ମିଳୁନଥିଲା ଓ ଦୋକାନୀ ମାନେ କହୁଥିଲେ ପୁରୁଣା ମଡେଲ ର ଜିନିଷ ଆଉ ଆସୁନି ।

ପ୍ରତ୍ୟେକ ରବିବାର ମିତା ଯେତେବେଳେ ତାକୁ ଡିଫ୍ରଷ୍ଟ କରୁଥିଲେ ସେତେବେଳେ ବରଫ ତରଳା ପାଣିକୁ ସେ ଭଙ୍ଗା ଟ୍ରେଟି ରଖିପାରୁନଥିଲା । ତେଣୁ ଘର ସାରା ପାଣି ହେଇଯାଉଥିଲା, ସେଥିରେ ମିତା ବିରକ୍ତ ହେଇଯାଇ ମିହିରଙ୍କୁ ବ୍ୟତିବ୍ୟସ୍ତ କରି ପକାଉଥିଲେ ଦୁଇ ଦରଜା ବାଲା ବଡ ଫ୍ରିଜ୍‌ଟିଏ କଣିବା ପାଇଁ । ସେଥିରେ କୁଆଡେ ଡିଫ୍ରଷ୍ଟ କରିବାର ଝିନ୍‌ଝଟ୍ ନଥାଏ । ତାଙ୍କ ସାଙ୍ଗମାନେ ସମସ୍ତେ ପୁରୁଣା ଫ୍ରିଜ୍ ବଦଳାଇ ନୂଆ ଆଣିସାରିଲେଣି ।

ମିହିର ନୂଆ ଫ୍ରିଜ୍‌ଟିଏ କିଣିବାକୁ ରାଜି ହେଇଥିଲେ ବି ପୁରୁଣା ଫ୍ରିଜ୍‌ଟିକୁ ବିଦା କରିବାକୁ ଅନିଚ୍ଛା ପ୍ରକାଶ କରିଥିଲେ । କେଜାଣି କାହିଁକି ପୁରୁଣା ଜିନିଷଟିକୁ ଛାଡିଲାବେଳକୁ ତାଙ୍କର ଖୁବ୍ ମନଦୁଃଖ ହୁଏ । ଯେମିତି ହୋଇଥିଲା ମାରୁତି ଗାଡି ବଦଳାଇ ସାଣ୍ଟ୍ରୋ କିଣିଲାବେଳେ !

ଘରେ କିନ୍ତୁ ପୁରୁଣା ଫ୍ରିଜ୍‌ଟିକୁ ରଖିବା ପାଇଁ ମିତା, ପୁଅ, ଝିଅ କେହି ରାଜି ହେଇ ନଥିଲେ । ଶେଷରେ ବାଧ ହେଇ ଘରେ ଶାନ୍ତି ରକ୍ଷା ପାଇଁ ମିହିର ରାଜି ହୋଇଥିଲେ ପୁରୁଣା କେଲ୍‌ଭିନେଟର ଫ୍ରିଜ୍‌ଟିକୁ ବଦଳାଇ ନୂଆ ସାମ୍‌ସଙ୍ଗ ଟିଏ ନେବା ପାଇଁ ।

ଏଇ ମାତ୍ର ଦୋକାନୀ ଆସି ପୁରୁଣା ଫ୍ରିଜଟି ନେଇ ଯାଇ ତା ଜାଗାରେ ନୂଆଟିକୁ ରଖିଦେଇ ଯାଇଛି । ଘରେ ମିହିରଙ୍କ ଛଡା ବାକି ସଦସ୍ୟମାନେ ଖୁବ୍ ଖୁସି । ମିହିର କିନ୍ତୁ ବିଦାୟ ନେଇଥିବା ଫ୍ରିଜ୍‌ଟି କଥା ଭାବୁଥିଲେ । ଆହା ! ବିଚରା ଫ୍ରିଜ୍‌ଟି ପଚିଶ ବର୍ଷ କାଳ କେତେ ସେବା ନ କରିଛି ! ମମତାମୟୀ ମା' ପରି ସମସ୍ତଙ୍କ ପାଇଁ ଖାଇବା ସାଇତି ରଖିଛି । ଗୋଟିଏ ସୁଗୃହିଣୀ ଭଳି କୌଣସି ଖାଦ୍ୟ ନଷ୍ଟ ହେବାକୁ ଦେଇ ନାହିଁ ଓ ଆଜ୍ଞାବହ କର୍ମଠ ଭୃତ୍ୟ ପରି ଘରର ସମସ୍ତଙ୍କ କାମ ଢ଼ଣା ଅଧିକେ କରିଛି । ନ ହେଲେ କ'ଣ ମିତା ଚାକିରୀ କରି ପାରିଥାଆନ୍ତେ ତା ବିନା ? ତା' ନିଜ ଭିତରର ଅଂଗ ସବୁ ଭାଂଗି ରୁଜି ଯାଇଥିଲେ ବି ମିହିରଙ୍କୁ ଖର୍ଚ୍ଚାନ୍ତ ନ କରାଇ ବିନା ଅଭିଯୋଗରେ ଅବିରାମ କାମ କରି ଚାଲିଥିଲା ସିଏ ଠିକ୍ ଢେଙ୍କେ ମା ଙ୍କ ପରି ।

ତାର୍ ଦୋଷ ହେଲା ସିଏ ପୁରୁଣା ହୋଇ ଯାଇଥିଲା । ବୁଢ଼ା ଲୋକମାନେ ଚାଲିଲାବେଳେ ଧଇଁସଇଁ ହେଲାପରି ସିଏ ବି ଆଜିକାଲି ଚାଲିଲା ବେଳେ ଶବ୍ଦ କରୁଥିଲା । ବୃଦ୍ଧାବସ୍ଥାରେ ଲୋକମାନେ ଲୁଗାପଟା ଓଦା କରିଦେଲା ଭଳି ସିଏ ବି ଡିଫ୍ରଷ୍ଟ ବେଳେ ପାଣି ରଖିବାର କ୍ଷମତା ହରାଇ ଘରସାରା ପାଣିରେ ଭର୍ତ୍ତିକରି ଦେଉଥିଲା ଏବଂ ସେଇ ଦୋଷ ପାଇଁ ତାର ସବୁ ଉପକାର ଭୁଲିଯାଇ ତାକୁ ବିଦାୟ ନେବାକୁ ପଡୁଥିଲା । ମିହିରଙ୍କ ଆଖି ଲୁହରେ ସିକ୍ତ ହେଇଗଲା । ଏତିକି ବେଳେ ଝିଅ ଟିନା ଆସି କହିଲା-'ପାପା ଆସ ଖାଇବ ।'

ବିଷାଦ ଭରା କଣ୍ଠରେ ମିହିର କହିଲେ-'ତୁମେମାନେ ଖାଇଦିଅ-ମୁଁ ପରେ ଖାଇବି-ଏବେ ଭୋକ ଲାଗୁନି ।'

ଟିନା ମିହିରଙ୍କ ହାତ ଧରି ଟାଣି କହିଲା-'ଓହୋ ପାପା, ନିର୍ଜୀବ ଫ୍ରିଜ୍‌ଟା ପାଇଁ କ'ଣ ଏତେ ଶୋକ ପାଳୁଛ । ଆସ ତ ଖାଇବା, ଆମକୁ ବହୁତ ଭୋକ ଲାଗିଲାଣି ।

□□□

# ଦ୍ୱେଷ

ସେଦିନ ବିଶ୍ୱକପ୍ କ୍ରିକେଟ୍ ମ୍ୟାଚ୍ ଥିବାରୁ ବି ସିଫ୍ଟ୍ କରିବାପାଇଁ କୌଣସି ଡାକ୍ତର ରାଜି ହୋଇ ନଥିଲେ । ମିତା କିନ୍ତୁ ଭାବିଲା ମାସରେ ତ ଯେମିତି ହେଲେ ଗୋଟେ ରବିବାରରେ ବି ସିଫ୍ଟ କରିବାକୁ ପଡ଼ିବ । ବରଂ ଭାରତ ଖେଳୁଥିବା ଦିନ ଘରେ ନରହି ଡାକ୍ତରଖାନାରେ କାମ କରିବା ଭଲ । କାହିଁକି ନା ଯେତେବେଳେ ଭାରତ ଖେଳେ, ମିତାକୁ ସେ ଦିନଟା ପରୀକ୍ଷା ଥିଲା ଭଳିଆ ଲାଗେ । ଟିଭି ଲାଗିଥିବା ବଖରାକୁ ଆଦୌ ପଶେନି ସେ । ମିହିର ଓ ପିଲାମାନେ କ୍ରିକେଟ୍ ମ୍ୟାଚ୍ ଦେଖିଲାବେଳେ ମିତା ପିଲାମାନଙ୍କ ବଖରାରେ କବାଟ ବନ୍ଦକରି ରହେ, ନ ହେଲେ ବଗିଚାରେ ବୁଲେ । ଟିଭିରେ ହୋ ହଲ୍ଲା ହେଲେ ତା'ର ଛାତିରୁ ଅତଡା ଖସିଲା ଭଳି ଲାଗେ । ଯଦି ଭାରତ ବ୍ୟାଟିଂ କରୁଥାଏ, ତା' ହେଲେ ତାକୁ ଲାଗେ କିଏ ଜଣେ ଆଉଟ୍ ହେଲା । ଆଉ ଯଦି ବିପକ୍ଷ ଦଳ ବ୍ୟାଟିଂ କରୁଥାଏ, ତାହେଲେ ତାକୁ ଲାଗେ ସେମାନେ ଚୌକା କି ଛକା ମାରିଲେ । ସେଥିପାଇଁ ଡାକ୍ତରଖାନାରେ ରହି କାମ କରିବା ଭଲ । ମିତା ଡାକ୍ତରଖାନାରେ ଥିଲେ ବି ମନଟା ତା'ର ଯାଇ ମ୍ୟାଚ୍‌ରେ । ସଂଧ୍ୟାରେ ରାଉଣ୍ଡ କରିସାରିବାପରେ ଘରକୁ ଫୋନ୍ କରିଥିଲା ଅଷ୍ଟ୍ରେଲିଆ କେତେ ରନ୍ କଲାବୋଲି । ମିତା ଆସିବା ଆଗରୁ ଜାଣିକି ଆସିଥିଲା ଅଷ୍ଟ୍ରେଲିଆ ବ୍ୟାଟିଂ କରୁଛି ବୋଲି । ମିହିର ଯେତେବେଳେ କହିଲେ ଅଷ୍ଟ୍ରେଲିଆ ତିନିଶହ ଅଣଷଠି ରନ୍ କରିଛି, ମିତା ବିଶ୍ୱକପ୍ ଜିତିବାର ଆଶା ଛାଡ଼ିଦେଇ ଫୋନ୍‌ରଖି ଆସିଥିବା ନୂଆ ରୋଗୀକୁ ଦେଖିବାରେ ମନେଦେଲା ।

ଘଣ୍ଟାକୁ ଚାହିଁ ମିତା ଦେଖିଲା ନଅଟା ପନ୍ଦର ହେଲାଣି । ଆଉ କେମିତି ପଇଁଚାଳିଶ ମିନିଟ୍ ବିତିଲେ ଘରକୁ ଯିବ ବୋଲି ମନ ତାର ଅସ୍ଥିର ହେଲା । ସବୁବେଳେ ମିତା ଘଣ୍ଟା ଘଣ୍ଟା ଡାକ୍ତରଖାନାରେ ରହି ଡିଉଟି କରିପାରେ, କିନ୍ତୁ ଶେଷ ଅଧଘଣ୍ଟା ଚାଳିଶ ମିନିଟ୍ ତାକୁ କେଜାଣି କାହିଁକି ବହୁତ ଲମ୍ୱା ଲାଗେ । ଏତିକିବେଳେ ବାଣ ଫୁଟିବାର ଶବ୍ଦ ହେଲା । ମିତା ଠିକ୍ ଶୁଣିଲା ତ ! ସିଏ କାନେଇଲା, ପୁଣି ବାଣ ଫୁଟିବାର ଶବ୍ଦ । ତାକୁ ବିଶ୍ୱାସ ଲାଗିଲାନି । ମିତା ଡାକ୍ତରଖାନାର ବାରଣ୍ଡାକୁ ବାହାରି ଆସିଲା । ଦୁଇ ମିନିଟ୍ ପରେ ଆହୁରି ଥରେ ବାଣ ଫୁଟିଲା । ମିତା ଭାବିଲା ତା' ହେଲେ କ'ଣ ଭାରତ ଜିତିଗଲା । ତେନ୍ଦୁଲ୍‌କର, ସେହୱାଗ୍ ତାହେଲେ ଖୁବ୍ ଭଲ ଖେଳିଥିବେ । ଖୁସି ହୋଇ ଘରକୁ ଫୋନ୍ ଲଗାଇଲା ମିତା । ମିହିର ଫୋନ୍ ଧରୁ ଧରୁ ପଚାରିଲା 'ଖେଳ ସରିଗଲା ? କିଏ ଜିତିଲା ?'

କିଏ ଆଉ ଜିତିବ ? ଅଷ୍ଟ୍ରେଲିଆ ଜିତିଲା ଶହେ ପଚିଶ ରନ୍‌ରେ । ମିହିର ଉତ୍ତର ଦେଲେ । 'ଆଉ ବାଣ କେମିତି ଫୁଟୁଚି ?' ମିତା ପଚାରିଲା । କାହାର ବାହାଘର ଥିବ କହି ମିହିର ଫୋନ୍ ରଖିଲେ ।

ମିତା ଜାଣିଛି, ଏବେ ଜମା ବାହାଘର ତିଥି ନାହିଁ । ଭାରତ ହାରିଲା ବୋଲି ଖୁସିହୋଇ କିଏ ଜଣେ ବାଣ ଫୁଟାଇଛି । ମିତା ଆଜି ସକାଳେ ଖବରକାଗଜରେ ପଢ଼ିଥିଲା ବିଶ୍ୱକପ୍ କିଏ ଜିଣିବ ବୋଲି ଅହମଦାବାଦରେ ଦୁଇ ସଂପ୍ରଦାୟ ମଧ୍ୟରେ ଦଙ୍ଗା ହେଇଚି ଓ କେତେ ଜଣ ବି ସେଥିରେ ଆହତ ହୋଇଛନ୍ତି । ତା' ହେଲେ ? ମିତା ଜାଣିଦେଲା କେଉଁ ସଂପ୍ରଦାୟର ଲୋକମାନେ ବାଣ ଫୁଟାଉଛନ୍ତି । ପୁଣି ବାଣ ଫୁଟିଲା । ମିତା ଅନ୍ଦାଜ ଲଗାଇଲା ଶବ୍ଦ କେଉଁ ଦିଗରୁ ଆସୁଛି ବୋଲି । ଏତେ ଭଲରେ ଜାଣି ନ ପାରିଲେ ବି ତାକୁ ଲାଗିଲା ସେକ୍ଟର ପନ୍ଦର ଆଡୁ ହିଁ ଆସୁଛି । କହିବା ବାହୁଲ୍ୟ, ଚଉଷଠି ମସିହା ରାୟଟ୍ ପରଠୁ ସେମାନେ ପନ୍ଦର ନମ୍ବରରେ ରହୁଛନ୍ତି । ଭାରତରେ ରହି ଭାରତ ହାରିଲେ ବାଣ ଫୁଟାଇବେ । ରାଗ ଚଢ଼ିଗଲା ମିତାର ।

ତା' ପରଦିନ ସକାଳ ଆଠଟାରେ ଡିପାଟ୍‌ମେଣ୍ଟରେ ପହଞ୍ଚି ଦେଖିଲା, ଡାକ୍ତରମାନେ କାଲି ରାତି ଖେଳର ପୋଷ୍ଟମର୍ଟମ୍ କରୁଛନ୍ତି । କିଏ କହୁଛି, ଟସ୍‌ରେ ଜିଣି ଗାଙ୍ଗୁଲି ସେମାନଙ୍କୁ ବ୍ୟାଟିଂ କରିବାକୁ ଦେଇ ଭୁଲକଲା । ପ୍ରଥମେ ବ୍ୟାଟିଂ କରିଥିଲେ ବିନା ଚାପରେ ଖେଳିଥାନ୍ତେ ଓ ହୁଏତ ଜିଣିଥାନ୍ତେ । ଆଉ କିଏ କହୁଛି ଭାରତର ଭାଗ୍ୟଟା କାଲି ଭଲ ନଥିଲା, ନ ହେଲେ ତେନ୍ଦୁଲକର ଚାରି କରି କେମିତି ଆଉଟ୍ ହେଲା । ଯାହା ବି ହେଉ, ସମସ୍ତେ କିନ୍ତୁ ଏକମତ ହେଲେ ଯେ ଭାରତ ଭଲ ଖେଳିଛି । କାହିଁକି ନା ସବୁବେଳେ ତେନ୍ଦୁଲକର ଆଉଟ୍ ହୋଇଗଲେ ଅନ୍ୟମାନେ ଆଉ ଜମାରୁ ଖେଳି ପାରନ୍ତିନି । ଏଥରକ କିନ୍ତୁ ନିଜକୁ ଅସହାୟ ମନେ ନ କରି ଶେଷ ପର୍ଯ୍ୟନ୍ତ ଲଢ଼ିଛନ୍ତି । ମିତା ସେ ସବୁ ତର୍କବିତର୍କରେ ଭାଗ ନ ନେଇ ଗୁମ୍ ହୋଇ ବସିଥାଏ । ସବୁ ଆଲୋଚନା ସରିଲାପରେ ସମସ୍ତଙ୍କୁ ଅନାଇ କହିଲା 'କାଲି ଭାରତ ହାରିଯିବା ପରେ କେତେ ବାଣ ଫୁଟିଲା ସବୁ ଶୁଣିଛ କି ନାହିଁ ?' ମିତାର ସାଂଗ ଡାକ୍ତର ସୁରମା ହସି ହସି କହିଲା 'ଭାରତ ହାରିଲା ବୋଲି ମିତାର ଦୁଃଖ ନାହିଁ । ବାଣ ଫୁଟିଲା ବୋଲି ତାର ଦୁଃଖ' ।

'ହଁ ସତ କଥା' ମିତା ଚିଡ଼ିକି କହିଲା । 'ବାଣ କିଏ ଫୁଟାଇଥିବେ ବୋଲି ତୁମେ ଭାବୁଛ' ସୁରମା ପଚାରିଲା ।

'ସେଇମାନେ ଫୁଟାଇଥିବେ ଯେଉଁମାନେ ଭାରତ ହାରିଲେ ମିଠା ବାଣ୍ଟନ୍ତି ।'

'ମିତା ଆମର ଖାଣ୍ଟି ହିନ୍ଦୁ । ବାଲ୍‌ଠାକ୍‌ରେଙ୍କ ଶିବସେନାମାନଙ୍କ ଭଳିଆ' ସୁରମା ମନ୍ତବ୍ୟ ଦେଇଥିଲା । 'ମୁଁ ଖାଣ୍ଟି ହିନ୍ଦୁ ନୁହେଁ, ମୁଁ ଖାଣ୍ଟି ଭାରତୀୟ' ମିତା ବ୍ୟାଖ୍ୟା କରିଥିଲା ।

ସୁରମା ପଚାରିଲା ମିତାକୁ 'ମନେକର ତୁମେ ପାକିସ୍ତାନରେ ରହୁଥାଆନ୍ତ ଓ ପାକିସ୍ତାନ ହାରିଥାଆନ୍ତା, ତୁମେ ଖୁସି ହୋଇଥାଆନ୍ତ କି ନାହିଁ ?'

'ପାକିସ୍ତାନ ହାରିଥିଲେ ମୁଁ କେବେ ଖୁସି ହୋଇ ନଥାନ୍ତି । ଏମିତିକି ଭାରତ ପାଖରୁ ହାରିଲେ ବି ନୁହେଁ, କାହିଁକି ନା ଯେଉଁ ଦେଶର ମାଟି, ପାଣି ପବନରେ ମୋର ଶରୀର ଗଢ଼ା, ସେଇ ଦେଶପ୍ରତି ମୁଁ ଅନୁରକ୍ତ ହେବା ନିତାନ୍ତ ଦରକାର ।' ମିତା ଓଲଟା ଜବାବ ଦେଲା ।

'ହଉ ଛାଡ଼, ସେମାନେ ସିନା ଜାଣି ପାରୁ ନାହାନ୍ତି କେଉଁ ଭଳିଆ ବ୍ୟବହାର କରୁଛନ୍ତି ବୋଲି, ଆମେ ବି କାହିଁକି ସେମିତି କରିବା । ଆମର ପରା ସହନଶୀଳତା ବେଶି !' ସୁରମା ବୁଝାଉଥିଲା ।

'ତା ନୁହେଁ, ସେମାନେ ସାହାସୀ ଓ ଆମେମାନେ ଭୀରୁ । କେବଳ ଭାରତ ବର୍ଷରେ ଏ ସବୁ ହୋଇଥାଏ । ପୃଥିବୀର ଅନ୍ୟ କୌଣସି ସ୍ଥାନରେ ନୁହେଁ' କହି ମିତା ଆଉଟ୍‌ଡୋର ଯିବାକୁ ବାହାରିଲା ।

ବ୍ୟାଗ୍‌ଟା ଟେବୁଲ୍‌ରେ ଥୋଇ ଚୌକିରେ ବସୁ ବସୁ ଜଣେ ବୟସ୍କ ଶ୍ୱାସ ରୋଗୀ ଧଇଁସଇଁ ହୋଇ ପଶିଆସିଲା ଭିତରକୁ । ତାକୁ ବସିବାକୁ କହି ମିତା ତାର ମେଡ଼ିକାଲ ବହି ଦେଖିଲା, ରୋଗୀର ନାଁ ହେଉଛି ସେକ୍ ଅବଦୁଲ । ଓଃ, ଏଇ ତା' ହେଲେ କାଲି ବାଣ ଫୁଟାଉଥିଲା । କିନ୍ତୁ ଏତେ ଦେହ ଖରାପରେ କ'ଣ ବାଣ ଫୁଟାଇପାରିଥିବ ଇଏ । ଇଏ ନ ଫୁଟାଇଥିଲେ ଯାର ଭାଇ ବନ୍ଧୁ କୁଟୁମ୍ବ ଫୁଟାଇଥିବେ ନିଶ୍ଚୟ । ମନର ରାଗ ବାହାରକୁ ନ ଜଣାଇ ତାକୁ ଦେଖିସାରି ସାତଦିନ ପାଇଁ ଔଷଧ ଲେଖିଦେଲା ମିତା ଓ ତା ହାତକୁ ସ୍ଲିପ୍ ବଢ଼ାଇଦେଲା । ସ୍ଲିପ୍ ପଢ଼ି ଅସୁସ୍ଥ ଲୋକଟି କହିଲା ଏଇ ଶ୍ୱାସ ଔଷଧ ଖାଇଲାରୁ ତାର ପେଟ ଫୁଲିଯାଉଛି, ତେଣୁ ଅନୁରୋଧକଲା ତାକୁ ରାନିଟିଡିନ୍ ଓ ଡାଇଭଲ୍ ବଟିକା ଦେବାପାଇଁ ।

ଶ୍ୱାସ ବଟିକା ସାଂଗରେ ଏସବୁ ବଟିକା ଦିଆଯାଏ ଓ ମିତା ଦିଏ ମଧ୍ୟ । କିନ୍ତୁ ଆଜି ଯାହା ବି ହେଇଗଲେ ସିଏ ବଟିକା ଲେଖିବନି ବୋଲି ଭାବିସାରିଥିଲା । ତେଣୁ ଅବଦୁଲକୁ କହିଲା 'ତୁମେ ଜୀବନସାରା ଶ୍ୱାସ ବଟିକା ଖାଇବ ବୋଲି କ'ଣ ଜୀବନସାରା ରାନିଟିଡିନ୍

ଓ ଡାଇଭଇ ଖାଉଥିବ । ସେମିତି ମୁଁ ଦେଇପାରିବିନି । ଯଦି ତୁମ ପେଟ ଫୁଲି ଯାଉଛି, ତୁମେ ଔଷଧ ସବୁ ଖାଲି ପେଟରେ ନ ଖାଇ ବରଂ ଖାଇ ସାରିଲା ପରେ ଖାଅ । ତା ହେଲେ ପେଟ ଠିକ୍ ରହିବ ।'

ଅବଦୁଲ୍ ଅନୁନୟ ହୋଇ କହିଲା 'ଆଜ୍ଞା, ଦୟାକରି ଲେଖିଦିଅନ୍ତୁ । ମୁଁ ସବୁବେଳେ ନେଇଯାଉଛି ।'

'ଏଇଟା ଚେଷ୍ଟ ଆଉଟ୍‌ଡୋର । ସେ ଔଷଧ ଏଠି ଲେଖା ହେଇପାରିବନି । ତୁମର ଯଦି ପେଟ ଫୁଲିଯାଉଛି, ତୁମେ ଯାଇ ମେଡ଼ିକାଲ୍ ଆଉଟ୍‌ଡୋର୍‌ରେ ଦେଖାଅ' କହି ମିତା ତାକୁ ବିଦା କରିଥିଲା ଓ ମନେ ମନେ ଖୁବ୍ ଖୁସି ହୋଇଥିଲା । ମିତା ଜାଣିଛି ମେଡିକାଲ ଆଉଟ୍‌ଡୋରରେ ବେଶ୍ ଲମ୍ବା ଲାଇନ୍ । ତାର ନମ୍ବର ଆସୁ ଆସୁ ଘଣ୍ଟାଏ ଲାଗିଯିବ । ଛିଡା ହେଉ ଘଣ୍ଟାଏ, କାଲି ବାଣ ଫୁଟାଇଥିଲା ପରା ।

ଏତିକିବେଳେ ମିତା ପାଖରେ କାମ କରୁଥିବା ସିଷ୍ଟର ସବିତା ପଶିଆସିଲେ । ମିତାକୁ ନମସ୍କାର କରି, ଜରୁରୀ କାମରେ ଇଂଜେକସନ୍ ରୁମ୍ ଯାଇଥିଲେ ବୋଲି କହିଲେ ।

ସିଷ୍ଟରଙ୍କୁ ଦେଖି ମିତା ପୁଣି ଆରମ୍ଭ କଲା ସେଇ ବାଣଫୁଟା କଥା । ସିଷ୍ଟର ସବିତା ଗପିବାରେ ଲାଗିଲେ, ନବମ ଶ୍ରେଣୀରେ ପଢୁଥିବା ତାଙ୍କ ପୁଅ କେମିତି ଭାରତ ଯେବେ ଇଂଲଣ୍ଡ ହରାଇ ସୁପର ସିକ୍‌ସକୁ ଗଲା, ସେବେଠାରୁ ବାଣ କିଣିକି ରଖିଥିଲା । ଅବଶ୍ୟ ତିନି ଭାଗ ବାଣ ଶିବରାତ୍ରି ଦିନ ଫୁଟାଇ ଦେଇଥିଲା, ଯେତେବେଳେ ପାକିସ୍ଥାନକୁ ଭାରତ ହରାଇଥିଲା । ବାକି ଭାଗେ ବାଣ ରଖିଥିଲା ଭାରତ ବିଶ୍ୱକପ୍ ଜିଣିଲେ ଫୁଟାଇବ ବୋଲି । କିନ୍ତୁ କାଲି ଖେଳ ସରିଲାପରେ ସିଏ ସେ ସବୁ ଫୁଟାଇ ଶେଷ କରିଥିଲା । ତାର ଯୁକ୍ତି ଥିଲା, ଦୀର୍ଘ କୋଡିଏ ବର୍ଷ ପରେ ଭାରତ ଫାଇନାଲ୍ ଖେଳିଲା ଓ ରନର୍ସଅପ୍ ହେଲା । ଏହା ନିଶ୍ଚିତ ରୂପରେ ଏକ ଖୁସିର ଖବର । ତା' ପରେ ଆହୁରି କେତେ କ'ଣ କହି ଚାଲିଥିଲେ ସିଷ୍ଟର ସବିତା । ମିତାକୁ କିନ୍ତୁ କିଛି ଶୁଭୁନଥିଲା । ନିଆଁରେ ପାଣି ପକାଇଲା ପରି କାଲିଠାରୁ ତା ମନରେ ଥିବା ରାଗ ମରିଯାଇଥିଲା । ସିଏ ଚୌକିରୁ ଉଠିପଡି ବାରଣ୍ଡାକୁ ଆସି ମେଡ଼ିସିନ୍ ଆଉଟ୍‌ଡୋର୍ ସାମନାରେ ଥିବା ଲମ୍ବା ଲାଇନ୍ ଲାଗିଥିବା ରୋଗୀମାନଙ୍କ ଭିତରୁ ଅବଦୁଲ୍‌କୁ ଖୋଜି ଲାଗିଥିଲା ।



# ବିଭ୍ରମ

ସବୁଦିନ ଡାକ୍ତରଖାନାରୁ ଦୁଇଟା ବେଳେ ଫେରୁଥିବା ମିହିର ଆଜି ସାଢ଼େ ବାରଟା ବେଳକୁ ଘରକୁ ଫେରିଥିଲେ । ସବୁଦିନ ପରି ସଂଧ୍ୟା ପାଂଚଟାରେ ସିଏ ଆଜି ହସପିଟାଲ ଯିବେନି । ଆଜି ଜଣଙ୍କୁ ପେସ୍ ମେକର ଲଗାଇବାର ଅଛି । ତେଣୁ ଶୀଘ୍ର ଖାଇ ଘଣ୍ଟାଟେ ଶୋଇ ପ୍ରାୟ ସାଢ଼େ ତିନିଟା ବେଳକୁ ହସପିଟାଲ ଯିବେ । କାଲିଠାରୁ ପିଲା ଦୁଇଜଣ ମିତାଙ୍କ ସାଂଗେ ଯାଇଛନ୍ତି କଟକ ମାମୁଁ ଘରକୁ । ଚାରିଦିନ ପରେ ଫେରିବେ । ଆଜି ସିଏ ଘରେ ଏକୁଟିଆ । ଘରେ କାମ କରୁଥିବା ଆୟା ରୋଷେଇ କରି ଟେବୁଲ୍ ଉପରେ ସବୁ ରଖିଦେଇଛି । ମିହିର ନିଜେ ବାଢ଼ି ଖାଇନେଲେ । ଖାଇ ସାରିଲା ପରେ ସିଏ ମିଠା ନହେଲେ ଫଳ ଖାଆନ୍ତି । ମନେ ପଡ଼ିଲା ମିତା ଫ୍ରିଜରେ ବାରିଗଛର ପିଜୁଳି ରଖିକି ଯାଇଛନ୍ତି । କହିଛନ୍ତି ମନେପକାଇ ପିଜୁଳି ଖାଇବାପାଇଁ । ମିହିର ଫ୍ରିଜ୍ ଖୋଲି ଦେଖିଲେ ବେଶ ବଡ଼ ବଡ଼ ପାଚିଲା ହୋଇ ଯାଇଥିବା ଛ, ସାତଟି ପିଜୁଳି । ସବୁଠାରୁ ଉତ୍କୃଷ୍ଟ ମନେହେଉଥିବା ପିଜୁଳିଟିଏ ବାଛି ଖାଇ ଖାଇ ମିହିର ଶୋଇବାକୁ ଗଲେ ।

ଏଇ ଗଛରେ ପିଜୁଳି ବହୁତ ଫଳେ ଓ ସ୍ୱାଦରେ ଖୁବ୍ ମିଠା । ଘରେ ତ ସେମାନେ ଯାହା ଖାଆନ୍ତି, କଟକରୁ ବି କିଏ ଗଲେ ମିତା ବ୍ୟାଗ ଭର୍ତ୍ତି ପିଜୁଳି ପଠାନ୍ତି । ତଥାପି ସାରି ପାରନ୍ତିନି ଯେ ଗଛରେ ପିଜୁଳି ପାଚିଯାଏ । ତାକୁ ବି ନଷ୍ଟ ହେବାକୁ ଦିଅନ୍ତିନି । ସେଥିରେ ଜାମ୍ ତିଆରି କରନ୍ତି । କିନ୍ତୁ ଯେବେଠାରୁ ମିହିରଙ୍କ ଘରେ କାମ କରୁଥିବା ବୁଢ଼ା ମାଳୀର ପୁଅ ପଡ଼ୋଶୀ ମିଶ୍ର ବାବୁଙ୍କ ଆଉଟ୍ ହାଉସକୁ ଆସିଲାଣି ସେବେଠାରୁ ଆଉ ମିତାଙ୍କୁ ପିଜୁଳି ଖାଇବାକୁ ମିଳୁନାହିଁ । ମାଳୀର ଆଠ ବର୍ଷ ନାତି କାହ୍ନା କୁଆଡ଼େ ଦ୍ୱିପହରରେ ଆସି ଚୋରି କରି ନେଇଯାଉଛି । ଯଦିଓ ପିଜୁଳି ଗଛଟି ଅଗଣାରେ ଅଛି ତାର ଡାହିସବୁ କିନ୍ତୁ ଛାତରେ । ଘରର ବାହାରପଟେ ମିହିରଙ୍କ ଗ୍ୟାରେଜକୁ ଲାଗି ପଡୋଶୀ ମିଶ୍ର ବାବୁଙ୍କ ଆମ୍ବଗଛ । କାହ୍ନା ସେଇ ଆମ୍ବଗଛରେ ଚଢ଼ି ଗ୍ୟାରେଜ ଦେଇ ଛାତକୁ ଆସି ସବୁ ପିଜୁଳି ନେଇଯାଉଛି । ସକାଳେ ସ୍କୁଲଯାଏ । ତେଣୁ ସିଏ ସବୁବେଳେ ଦ୍ୱିପ୍ରହରରେ ଚୋରି କରେ । ସେ ସମୟଟା ସମସ୍ତେ ଖାଇ ପିଇ ଟିକେ ଆରାମ କରନ୍ତି ଆଉ ସେଇ ନିଛାଟିଆ ସମୟରେ ସିଏ ତାର କାମ କରିଦିଏ ଅକ୍ଳେଶରେ । ମିତା ବହୁତଥର ଚେଷ୍ଟା କରିଛନ୍ତି ତାକୁ ଧରିବାକୁ । ସିଏ କିନ୍ତୁ ସବୁଥର କେମିତି ହେଲେ ଖସି ପଳାଏ । ମିତା ଏ କଥା ମିହିରଙ୍କୁ କହିଲେ ସିଏ କୁହନ୍ତି-ହଁ, ଛୋଟ ପିଲା, ନେଲେ ନେଲା । ତୁମ ପିଲା ଖାଇଲେ ଯାହା ସିଏ ଖାଇଲେ ସେଇଆ । ଏତେ ରାଗୁଛ କାହିଁକି ?

ମିତା କୁହାନ୍ତି-ଚୋରି କ'ଣ ପାଇଁ କରୁଛି ? ମାଗିକି ନେଉନି ?

'ମାଗିଲେ ତମେ ଦେବ ? ସେଥିପାଇଁ ସିଏ ମାଗୁନି' ଉତ୍ତର ଦିଅନ୍ତି ମିହିର ।

ମିତା ରାଗିକି କୁହନ୍ତି, ଚୋରି ତ କରୁଛି । ପୁଣି ପିଜୁଳି ତା ଭାଇ ଭଉଣୀଙ୍କ ସାଂଗରେ ବାଡ଼ ସେ ପାଖେ ବସି ଖାଇଲାବେଳେ ପିଜୁଳି କେଉଁଠୁ ଆଣିଲୁ ପଚାରିଲେ କହୁଛି 'ବୁଆ ଘିନି ଆଣିଛି ବଜାରରୁ ।'

ମିତା ଦିନେ ବୁଢ଼ା ମାଳିକୁ କାହ୍ନା ନାଁରେ ଅଭିଯୋଗ କରିଥିଲେ । ସବୁ ଶୁଣି ମାଳୀ କହିଲା-ଆମେ ତାହାକେ ନାଇଁ ପାରିବା ଗୋ ମା । ଚୁରାଇଲାବେଳେ ଧରଇ ଯଦି ତୁମେ କାଣା କରିପାରୁଛ କର । ଆମେ କିଛୁ ନାଇଁ କହୁଁ ।

କାହ୍ନୁ କୁ କିନ୍ତୁ ଧରିବାର ଉପାୟ ନାହିଁ । ଭାରି ବିଚକ୍ଷଣ ପିଲା । ତେଣୁ ମିତା ଗଲା ଦଶଦିନ ହେଲାଣି ପିଜୁଳି ଜଗିବା ପାଇଁ ନ ଶୋଇ ଦ୍ୱିପହର ସାରା ଗ୍ୟାରେଜ ପାଖେ ବସି ବହି ପଢୁଥିଲେ ନ ହେଲେ ବଗିଚାରେ ପାଣି ଦେଉଥିଲେ । ଏଇ ଭିତରେ ପିଜୁଳି ସବୁ ବନି ଆସିଲା । କାଲି ପୁଅ ମିଟୁକୁ ଚଢ଼ାଇ ସବୁ ପିଜୁଳି ତୋଳି ଥିଲେ ମିତା । ମିହିରଙ୍କ ପାଇଁ ଛଅ ସାତଟା ପିଜୁଳି ରଖି, ବାକି ସବୁ କଟକ ନେଇଯାଇଛନ୍ତି । ସେଠି ସବୁ ଭାଇ ଭଉଣୀ ମିଶି ପିଜୁଳି ଚାଟ୍ ତିଆରି କରି ଖାଇବେ । ଏବେ ଗଛରେ କେବଳ କଷି ପିଜୁଳି ସବୁ ଅଛି ।

ଏ ସବୁ ଭାବୁ ଭାବୁ କେତେବେଳେ ମିହିରଙ୍କୁ ନିଦ ଲାଗିଯାଇଛି । ହଠାତ୍ ଛାତ ଉପରେ ଦୁମ୍ ଦୁମ୍ ଶବ୍ଦରେ ତାଙ୍କର ନିଦଟା ଭାଂଗିଗଲା । କଞ୍ଚା ନିଦଟା ଭାଙ୍ଗିଯିବାରୁ ମିହିର ଚିଡ଼ି ଉଠିଲେ । ମିହିରଙ୍କ ମୁଣ୍ଡ ସବୁବେଳେ ଥଣ୍ଡା ଥାଏ, କିନ୍ତୁ ଏମିତି ଅଧା ନିଦରୁ କିଏ ଉଠାଇଦେଲେ ସିଏ ଭାରି ରାଗି ଯାଆନ୍ତି । ମିହିର ଜାଣି ସାରିଥିଲେ ଯେ ଘରେ କେହି ନଥିବେ ବୋଲି ଭାବି କାହ୍ନା ଆସି ପିଜୁଳି ଚୋରି କରୁଛି । ସବୁବେଳେ ମିତାକୁ କାହ୍ନା ଉପରେ ନ ରାଗିବା ପାଇଁ ଉପଦେଶ ଦେଉଥିବା ମିହିର ଆଜି ଅଚାନକ୍ କାହ୍ନା ଉପରେ ରାଗିକି ନିଆଁ ହୋଇଗଲେ ଓ ମନେ ମନେ ଠିକ୍ କଲେ ଆଜି ଯେମିତି ହେଲେ ତାକୁ ଧରିବେ ଓ କଡା ସଜା ଦେବେ । ମିତା କଟକରୁ ଆସି ଏକଥା ଶୁଣିଲେ ଖୁସି ହେଇଯିବେ ନିଶ୍ଚୟ । ପୋଲିସ୍ ଚୋରକୁ ଧରିଲା ଭଳିଆ ମିହିର ପାଦ ଚିପି ଚିପି ଆସି ଦାଣ୍ଡ କବାଟ ଖୋଲି ଗୋଟେ ଡ଼ିଆଁ ରେ ତାର ବାଡ଼ ଡ଼େଇଁ ମିଶ୍ର ବାବୁଙ୍କ ଆମ୍ବ ଗଛ ମୂଳରେ ହାଜର ହେଲେ ଓ ଗଛରୁ ଓହ୍ଲାଇ ଆସୁଥିବା କାହ୍ନୁ କୁ ଜାବୁଡି ଧରିଲେ । କାହ୍ନାର ଦୁଇ ପ୍ୟାଣ୍ଟ ପକେଟରେ ପିଜୁଳି ଭର୍ତ୍ତି । ମିହିର ତାର ଦୁଇ ହାତକୁ ଧରି ଗାରଡେଇ କି ଅନେଇଲେ ତାକୁ । ଭେଁ କିନା ରଡ଼ି ପକାଇ କାନ୍ଦି ଉଠିଲା ସିଏ । ଆଖିରୁ ଧାର ଧାର ଲୁହ ବୁହାଇ କହିବାକୁ ଲାଗିଲା-ମତେ ଛାଡ଼ିଦିଅ, ମୁଁ ଆଉ ଚୋରି ନାଇଁ କରେ ।

କାହ୍ନାର ମୁହଁକୁ ଅପଲକ ଅନାଇ ରହିଲେ ମିହିର । ତାଙ୍କର ମନେପଡ଼ିଲା ସାନ ଭାଇ ବୁନୁର କଥା । ମିହିର ଯେତିକି ଶାନ୍ତ ଥିଲେ ବୁନୁ ଥିଲା ସେତିକି ଚଗଲା । ପାଠ ପଢ଼ିବାକୁ ଆଦୌ ଇଚ୍ଛା କରେନି । ସବୁବେଳେ ଦୁଷ୍ଟାମି କରୁଥିବ । ବାରିପଦାରେ ତାଙ୍କ ବାଡ଼ିରେ ଅନେକ ପିଜୁଳି ଥିଲେ ବି ସିଏ ତାର ବାଡ଼ରେ ଗଳି ପଡ଼ିଶାରେ ଥିବା ଘୋଷ ବାବୁଙ୍କ ଘରୁ ପିଜୁଳି ଚୋରି କରିବ । ସେଥିପାଇଁ ବାପା, ବୋଉ ତା ଉପରେ ବହୁତ ବିରକ୍ତ ହୁଅନ୍ତି । ମିହିର ବି ଚିଡ଼ନ୍ତି । ଯେତେବେଳେ ଦେଖ ଗୋଡ଼ ହାତରେ ଆଂଚୁଡ଼ା ଦାଗ । ନିଜେ ଚୋରି କରିବ ପିଜୁଳି, କିନ୍ତୁ ଘୋଷ ବାବୁଙ୍କ ନାଁ ରଖିଥିବ ରାକ୍ଷାସ । ଦିନେ ଦିନେ ଦ୍ୱିପହରରେ ପଢୁଥିବା ମିହିରଙ୍କୁ ଆସି କହିବ-ଭାଇନା ଆଜି ପିଜୁଳି ଖାଇ ପାରିଲିନି । ସେ ରାକ୍ଷାସଟା ସେଠି ବୁଲୁଛି । ମିହିର ଯଦି କହିବେ-ତୁ ପିଜୁଳି ଚୋରି କରୁଛୁ ଆଉ ଓଲଟା ତାଙ୍କୁ ରାକ୍ଷାସ କହୁଛୁ । ତାହେଲେ ବୁନୁ ଉତ୍ତର ଦେବ, ସେ ଘର ଓ ଗଛ ସିନା ତାଙ୍କର, କିନ୍ତୁ ଫଳ ତ ଭଗବାନଙ୍କର । ପିଜୁଳି ଖାଇବା ପାଇଁ ବୁନୁ ପିଲାଦିନେ ଏମିତି କହୁଥିଲା ସତ , କିନ୍ତୁ ଆଜିଇ ମିହିର ଅନୁଭବ କଲେ ବୁନୁ ଠିକ୍ କହୁଥିଲା । ଏବେ କେଉଁ ଗୋଟେ ବହିରେ ପଢ଼ିଥିଲେ ମଣିଷ ଗଛ ସିନା ଲଗାଇଦେବ କିନ୍ତୁ ଫୁଲ ଫୁଟାଇ ପାରିବନି କି ଫଳ ଫଳାଇ ପାରିବନି । ସେ ଶକ୍ତି ମଣିଷ ହାତରେ ନାହିଁ । ମିହିରଙ୍କ ଘରର ବାଡ଼ିଆଡ଼େ ଯେଉଁ ଆମ୍ବଗଛଟି ଅଛି ସେଥିରେ ଜମାରୁ ବଉଳ ଆସୁନି, କେତେ ସାର ଓ ପିଡିଆ ପାଣି ଦିଆହେଲେ ବି । ଗଛର ଫଳ ସମସ୍ତେ ବାଣ୍ଟିକି ଖାଇବା କଥା । ମିହିରଙ୍କ ବୋଉ ସେଇକଥା ଜାଣିଥିଲେ । ସେଥିପାଇଁ ବାଡ଼ିରେ ଥିବା ଗଛରୁ ପଚାଇବା ପାଇଁ ଯେତେବେଳେ ଆମ୍ବ, ସପେଟା, ଲିଚୁ ଆଦି ତୋଳା କରାନ୍ତି ଗଛ ପୂରା ଖାଲି ନକରି କିଛି କିଛି ଫଳ ଛାଡ଼ିଦିଅନ୍ତି ଗଛରେ ପକ୍ଷୀମାନେ ଖାଇବେ ବୋଲି । ଆଉ ତୋଳିଥିବା ଫଳ ପାଚିଲା ପରେ ବୋଉ ସମସ୍ତଙ୍କୁ ବାଣ୍ଟନ୍ତି । ପାଖ ପଡ଼ିଶାଙ୍କ ଠାରୁ ଆରମ୍ଭ କରି ଆୟା, ଧୋବା, କ୍ଷୀରବାଲା ପର୍ଯ୍ୟନ୍ତ । ଗଛର ଫଳ କାହାକୁ ନ ଦେଇ ନିଜେ ଖାଇବାଟା କୁଆଡ଼େ ଚୋରି ସାଂଗେ ସମାନ । ତାହେଲେ କାହ୍ନା ଚୋର ନୁହେଁ । ହସି ପକାଇଲେ ମିହିର । ମିହିରଙ୍କ ହସ ଦେଖି କାନ୍ଦ ବନ୍ଦ କଲା କାହ୍ନା ।

ମିହିର ସ୍ନେହଭରା କଣ୍ଠରେ କାହ୍ନାକୁ କହିଲେ-ଆରେ ଏ କଷି ପିଜୁଳିରେ ତୋର ଦାନ୍ତ ଭୁଜିବ ଯେ ତୁ ଖାଇବୁ ? ଆ, ଘରେ ପାଚିଲା ପିଜୁଳି ଅଛି, ଦେବି ଖାଇବୁ । କାହ୍ନା ଅବିଶ୍ୱାସ ଭରା ଚାହାଣୀରେ ମହିରଙ୍କୁ ଦେଖିଲାଗିଲା ।

□□□

# ପ୍ରତିଜ୍ଞା

ଦିନଆସି ଦୁଇ ବାଜିବ, ଅଥଚ ମିଟୁ ଏବେଯାଏ ଘରକୁ ଫେରିନି । ସୁମିତ୍ରା ବ୍ୟସ୍ତହେଲେ । ଆଜି ରବିବାର ହୋଇଥିବାରୁ ସୁମିତ୍ରା ଡାକ୍ତରଖାନା ନଯାଇ ଘରେ ଅଛନ୍ତି । ଗତକାଲି ଆର.ଇ.ସିରେ ପଢୁଥିବା ପୁଅ ମିଟୁର ଅଷ୍ଟମ ସେମିଷ୍ଟାର ପରୀକ୍ଷା ସରିଲା । ପରୀକ୍ଷା ପରଦିନ ତ ସିଏ ଦିନ ଦଶ, ଏଗାର ଯାଏ ଶୁଏ । କିନ୍ତୁ କେଜାଣି କାହିଁକି ଆଜି ସକାଳୁ ଉଠି ଗାଧୋଇ ହଷ୍ଟେଲ ଯାଉଛି କହି ଦିନ ଆଠରୁ ସୁମିତ୍ରାଙ୍କ କାର ନେଇ ତର ତର ହୋଇ ଚାଲିଗଲା । ଜଳଖିଆ ମଧ୍ୟ ଖାଇଲାନି । ମନୋରଂଜନ ନ'ଟାରେ ଉଠି ନିତ୍ୟକର୍ମ ସାରି ତାଙ୍କର କୋଉ ସାଂଗର ପୁଅ ବାହାଘରରେ ବରଯାତ୍ରୀ ହୋଇ ଯିବାପାଇଁ ସାଢ଼େ ଏଗାରରୁ ଘରୁ ବାହାରି ଗଲେଣି । ଘରେ ଏକୁଟିଆ ସୁମିତ୍ରା । ମିଟୁ ଓ ନିଜପାଇଁ ରୋଷେଇ କରିସାରି ଅପେକ୍ଷା କରି ବସିଛନ୍ତି । କେତେବେଳେ ମିଟୁ ଆସିଲେ ସାଂଗହୋଇ ଖାଇବେ ।

ଖଟରେ ଗଡୁ ଗଡୁ କେତେବେଳେ ସୁମିତ୍ରାଙ୍କର ଆଖି ଲାଗିଯାଇଛି । କଲିଂବେଲ ବାଜିବାରୁ ଚାଉଁକିନା ନିଦ ଭାଙ୍ଗିଗଲା ତାଙ୍କର । କବାଟ ଖୋଲି ଦେଖିଲେ ସାମନାରେ ମିଟୁ । ପିନ୍ଧିଛି ଘିଅ ରଂଗର କୁର୍ତ୍ତା, ପାଇଜାମା । କପାଳରେ  ଚନ୍ଦନଟୀକା ଓ ଦେହରେ ହୋମର ବାସ୍ନା । କାବାହେଲେ ସୁମିତ୍ରା । ଘରୁ ଗଲାବେଳେ ତ ମିଟୁ ପ୍ୟାଣ୍ଟ ସାର୍ଟ ପିନ୍ଧି ଯାଇଥିଲା, କିନ୍ତୁ ଏବେ ଇଏ କି ବେଶ ? ମା କୁ ଆଉ ଭାବିବାକୁ ନ ଦେଇ ମିଟୁ ସୁମିତ୍ରାଙ୍କ ହାତ ଧରି କହିଲା-'ମା ତୁମେ ରାଗିବନି । ମୁଁ ଆଜି ମୋ ସାଂଗରେ ପଢୁଥିବା ପ୍ରିୟାକୁ ବେଦବ୍ୟାସରେ ବାହାହୋଇଯାଇଛି । ସିଏ ବାହାରେ ଗାଡ଼ିରେ ବସିଛି । ତୁମେ ତାକୁ ସ୍ୱୀକାର କଲେ ସିଏ ଘରକୁ ଆସିବ । ନ ହେଲେ ହଷ୍ଟେଲ ଫେରିଯିବ ।' ସୁମିତ୍ରାଙ୍କୁ ଚାରିଆଡ଼ ଜାଲୁ ଜାଲୁଆ ଦିଶିଲା । ଠିକ୍ ଏଇ ସମୟରେ ମନୋରଂଜନ ବି ନାହାନ୍ତି । ମିଟୁ କାହିଁକି ଏମିତି କଲା ? ସୁମିତ୍ରାଙ୍କୁ ଏ କଥା ଜଣାଇଥିଲେ ସିଏ ନିଜେ ଜାକଜମକରେ ବାହାଘର କରାଇ ବୋହୂକୁ ଘରକୁ ଆଣି ଥାଆନ୍ତେ । କେତେ ସ୍ୱପ୍ନସିଏ ଦେଖିଥିଲେ ମିଟୁର ବାହାଘର ପାଇଁ । ମିଟୁ କ'ଣ ତାଙ୍କୁ ବିଶ୍ୱାସ କଲାନି ? ସୁମିତ୍ରା ଶାଶୁଘରେ  ପାଦଦେବା ବେଳେ ଯେଉଁ ପ୍ରତିଜ୍ଞା କରିଥିଲେ, ସେ ପ୍ରତିଜ୍ଞା ସିଏ ରକ୍ଷା କରିପାରିବେତ ? ଭଗବାନ ତାଙ୍କୁ ଏ କି ପରୀକ୍ଷା କରାଉଛନ୍ତି ? ମନରେ ଉଠୁଥିବା ଝଡ଼କୁ ଆୟତ୍ତରେ ରଖି ମିଟୁକୁ ଚାହିଁଲେ ସୁମିତ୍ରା । ସବୁବେଳେ ଦାଉ ଦାଉ ହୋଇ ଜଳୁଥିବା ମୁହଁ ଆଶଙ୍କାରେ ମଳିନ ଦିଶୁଛି । ସୁମିତ୍ରା ସମ୍ଭାଳି ନପାରି କହିଲେ

'ସିଏ ଏ ଘରର ବୋହୂ ହେଇସାରିଲାଣି । ହଷ୍ଟେଲ କାହିଁକି ଫେରିଯିବ ? ଯା, ତାକୁ ଘରକୁ ଆଣେ ।'

ପୁଅ ବୋହୂଙ୍କୁ ବନ୍ଦେଇ ଘରକୁ ଆଣିଲେ ସୁମିତ୍ରା ଓ ନିରେଖି ଚାହିଁଲେ ପ୍ରିୟାକୁ । ସାବନା ରଂଗର ସାଧାରଣ ଝିଅଟିଏ । ପିନ୍ଧିଛି ଲାଲ ରଂଗର ସୂତା ଶାଢ଼ି । ସାଂଗରେ ମ୍ୟାଂଚି ବ୍ଲାଉଜ୍ । ବେକରେ ସରୁ ସୁନା ଚେନ୍ ଓ କାନରେ ଟପ୍, ହାତରେ ଲାଲ ଶଂଖା ଓ ଲାଲ ଚୂଡ଼ି ଚାରି ଚାରି ପଟ । ମୁହଁରେ ଡରଡର ଭାବ । ମିଟୁ କହୁଥିଲା ଏବେଯାଏ ସେମାନଙ୍କ ସାଂଗମାନେ ଥିଲେ । ସୁମିତ୍ରାଙ୍କୁ ଡରି ଘରକୁ ଆସିଲେନି । ମିଟୁର ଅଧିକାଂଶ ବନ୍ଧୁଙ୍କୁ ସୁମିତ୍ରା ଜାଣନ୍ତି । ସୁମିତ୍ରାଙ୍କର ମନେପଡ଼ିଲା ଗଲାବର୍ଷ ମିଟୁର ଜନ୍ମଦିନରେ ବହୁତ ସାଂଗ ଆସିଥିଲେ ଘରକୁ । ତା ଭିତରେ ପ୍ରିୟାଥିଲା । ଅନ୍ୟମାନେ ଓଡ଼ିଶାର ଥିଲେ, କେବଳ ପ୍ରିୟାଥିଲା କେରଳର । ସେଥିପାଇଁ ତାକୁ ସିଏ ମନେରଖିଥିଲେ । କିନ୍ତୁ ସିଏ ତ ଏତେକଥା ଜାଣିନଥିଲେ ସେତେବେଳେ, ନ ହେଲେ ମନଧ୍ୟାନ ଦେଇ ଦେଖିଥାନ୍ତେ । ମିଟୁ ଓ ପ୍ରିୟା କୁ ନେଇ ମିଟୁ ବଖରାରେ ଛାଡ଼ି ନିଜ ଶୋଇବା ଘରକୁ ଆସିଲେ ସୁମିତ୍ରା । ସବୁବେଳେ ସିଏ ଭାବୁଥିଲେ ଯିଏ ତାଙ୍କର ବୋହୂ ହୋଇ ଆସିବ, ତାକୁ ଖୁବ୍ ସ୍ନେହ କରିବେ, ଆଦର କରିବେ, ଠିକ୍ ନିଜ ଝିଅ ମାମାଲି ପରି । ଘରର ଅନ୍ୟ ସଦସ୍ୟ ମାନଙ୍କୁ ବି ଗୋଡେ ଗୋଡେ ଜଗିବେ ଯେମିତି ତାକୁ କେହି ଅପଦସ୍ତ ନ କରନ୍ତି । ସମସ୍ତଙ୍କ ବ୍ୟବହାର ତା ପ୍ରତି ମାର୍ଜିତ ଓ ସ୍ନେହପୂର୍ଣ ହେବା ଦରକାର । ଯିଏ ତାଙ୍କ ଭାବୀ ବଂଶଧରଙ୍କୁ କୋଳରେ ଧରିବ ତା'ରତ ସ୍ନେହ ଓ ଆଦର ପାଇବାଟା ହକ୍ । ଏଇ ସ୍ନେହ, ଆଦର କରିବାର ଶପଥ ସିଏ ନେଇଥିଲେ ଯେଉଁଦିନ ଶାଶୁଘରେ ପ୍ରଥମକରି ଗୋଡ ଦେଇଥିଲେ ।

ପଚିଶବର୍ଷ ତଳର ଘଟଣା । ତାଙ୍କୁ କିନ୍ତୁ କାଲି ପରି ଲାଗୁଛି । ବାହାହେଇ ଯେତେବେଳେ ବାପଘରୁ ବିଦାୟ ହେଇ ଆସିଥିଲେ ସେତେବେଳେ ଏତେ ଅଶ୍ରୁପାତ କରିନଥିଲେ ଯେତେ କରିଥିଲେ ଶାଶୁଘରେ ପହଞ୍ଚିଲା ପରେ । ଶାଶୁଘରେ ପହଞ୍ଚିଲା ପରେ ପରେ ସିଏ ଶୁଣିଥିଲେ ଶାଶୁଙ୍କ ଗର୍ଜନ । ପ୍ରଥମେ ମନରେ ଭ୍ରମ ହୋଇଥିଲା ଭୁଲ୍ ଶୁଣିଛନ୍ତି ବୋଲି । କିନ୍ତୁ ପରେ ଜାଣିପାରିଥିଲେ ସୁମିତ୍ରା ଆଣିଥିବା ନଣନ୍ଦ ପୁଟୁଳି ଖୋଲିବାପରେ ସେଥିରେ ଥିବା ଶାଢ଼ୀ ଫିଙ୍ଗିଦେବାକୁ କହୁଥିଲେ ଶାଶୁ । ତାଙ୍କର ବିଏ ପାଶ କରିଥିବା ଦୁଇ ଝିଅଙ୍କ ପାଇଁ ଏମିତି ଶାଢ଼ୀ ? ଘରେ ଆଟ ପଟୁଆଳ ଲୋକ । ସିଏ କିନ୍ତୁ ସୁମିତ୍ରାଙ୍କ ବାପ ଘରକୁ ଆକ୍ଷେପ କରି ରାଗିକି କହି ଚାଲିଥିଲେ । ତା ସହିତ ମଧ ଟିପ୍ପଣୀ କରିଥିଲେ, ତାଙ୍କ ପୁଅକୁ ଜୋଇଁ କରିବାକୁ କେମିତି କେତେ ପଇସା ବାଲା ଲୋକଙ୍କ ଘରୁ ପ୍ରସ୍ତାବ ଆସିଥିଲା

ଓ ସେମାନେ କେମିତି ବାଟ ଖର୍ଚ୍ଚ, ଲକ୍ଷେ ଟଙ୍କା, ସ୍କୁଟର ଇତ୍ୟାଦି ଦେବେବୋଲି କହିଥିଲେ । ସୁମିତ୍ରା ସେ ପାଟିଶୁଣି ଲଜ୍ଜିତ, ବିବ୍ରତ ଓ ଅପମାନିତ ହୋଇ ଖୁବ୍ କାନ୍ଦିଥିଲେ । ସାଂଗରେ ତାଙ୍କୁ ଛାଡିବାକୁ ଆସିଥିବା ଛୋଟ ଭାଇଟି ପାଇଁ ବେଶି ବ୍ୟସ୍ତ ଲାଗୁଥିଲା ତାଙ୍କୁ । ଦୁଇ ନଣନ୍ଦ କଟାଘାରେ ଲୁଣଦେଲା ଭଳିଆ କହିଲେ, ସେ ଶାଢୀରେ ଭଲ କନ୍ଥା ହୋଇ ପାରିବ । ଏ ସବୁ ଅପମାନ ଦେଲାପରେ ବି ଶାଶୁଘର ଲୋକମାନେ ସନ୍ତୁଷ୍ଟ ହେଉନଥିଲେ ।

ଓଢ଼ଣା ଟାଣି ବସିଥିବା ସୁମିତ୍ରାଙ୍କୁ ତାଙ୍କ ନଣନ୍ଦ ଦୁଇ ଜଣ ଟାଣି ଟାଣି ତାଙ୍କ ଇଷ୍ଟ ଦେବତାଙ୍କୁ ମୁଣ୍ଡିଆ ମାରିବା ପାଇଁ ନେଇ ଯାଇଥିଲେ । ଓଢ଼ଣା ଭିତରୁ କିଛି ଦେଖିପାରୁନଥିବା ସୁମିତ୍ରା ମୁଣ୍ଡିଆ ମାରିବା ପରେ ସେମାନେ ହୋ ହୋଇ ହେଇ ହସି ଉଠିଥିଲେ । ନଣନ୍ଦ ତାଙ୍କ ମୁଣ୍ଡରୁ ଓଢ଼ଣା ଟାଣି ନେଇ ଦେଖାଇ ଦେଇଥିଲେ ସିଏ କାହାକୁ ମୁଣ୍ଡିଆ ମାରିଲେ ବୋଲି । ସେଠି ଇଷ୍ଟଦେବତା ନଥିଲେ, ଥିଲା ଗୋଟେ ଖଣ୍ଡିଆ ଖଡିକା ଝାଡୁ । ତାଙ୍କ ସହିତ ଶାଶୁଘର ଲୋକ ଏମିତି ବ୍ୟବହାର କରିବାର କାରଣ-ମନୋରଂଜନ ତାଙ୍କୁ ଭଲ ପାଇ ବିବାହ କରିଥିଲେ । ସୁମିତ୍ରା ମେଡ଼ିକାଲ କଲେଜରେ ତୃତୀୟ ବର୍ଷର ଛାତ୍ରୀ ଥିଲାବେଳକୁ ମନୋରଂଜନ ଥିଲେ ପିଜିର ପ୍ରଥମ ବର୍ଷର ଛାତ୍ର । ସେତେବେଳେ ସେମାନଙ୍କର ପରିଚୟ ଓ ପରେ ଭାବର ଆଦାନ ପ୍ରଦାନ । ଯଦିଓ ସେମାନଙ୍କର ଧର୍ମ ଓ ଜାତି ଏକ ଥିଲା ତଥାପି ମନୋରଂଜନଙ୍କ ଘରେ ଇଚ୍ଛା କରି ନଥିଲେ ସୁମିତ୍ରାଙ୍କୁ ବୋହୂ କରି ଆଣିବାକୁ । ଅବଶ୍ୟ ପରେ ରାଜି ହୋଇ ବାହାଘର କରାଇ ଥିଲେ ସୁମିତ୍ରାଙ୍କ ହାଉସ ସର୍ଜନ୍ ସିପ୍ ସରିବା ପରେ । କାରଣ ମନୋରଂଜନ ଅନ୍ୟ କୌଣସି ଜାଗାରେ ବାହା ହେବାକୁ ପୂରାପୂରି ମନା କରିଦେଇ ଥିଲେ । ଆଉ ସେଇଥିପାଇଁ ଶାଶୁଘର ପରିବାର ସୁମିତ୍ରାଙ୍କ ସାଂଗେ ଏପରି ଦୁର୍ବ୍ୟବହାର କରିଥିଲେ । ଏତେ ଅପମାନିତ ହେଲାପରେ ମଧ ସୁମିତ୍ରା ନିଜ ସୁଟକେସ ଖୋଲି ଦେଖାଇଥିଲେ ଦୁଇ ନଣନ୍ଦଙ୍କୁ । କହିଥିଲେ ଯେଉଁ ଶାଢ଼ୀ ସେମାନଙ୍କର ପସନ୍ଦ ନେଇଯିବା ପାଇଁ ଓ ସେମାନେ ତାହା ନେଇଥିଲେ ମଧ । ସେହିଦିନ ସୁମିତ୍ରା ଶପଥ କରିଥିଲେ, ତାଙ୍କର ବୋହୂକୁ ସିଏ ବହୁତ ଭଲ ପାଇବେ ଓ ଝିଅକୁ ଦେବେ ଅପର୍ଯ୍ୟାପ୍ତ ସମ୍ପତ୍ତି । ଯେଉଁ କଷ୍ଟ ସିଏ ପାଇଲେ ସେ କଷ୍ଟ ତାଙ୍କ ବୋହୂଝିଅ ଯେମିତି ନ ପାଆନ୍ତୁ ।

ତା ପରେ ଅବଶ୍ୟ ସୁମିତ୍ରା ଚାକିରୀ କରିଛନ୍ତି । ମନୋରଂଜନ ଓ ସୁମିତ୍ରା ମିଶି ଖୁବ୍ ପଇସା କମାଇଛନ୍ତି । ସୁମିତ୍ରା ଶାଢ଼ୀ, ଗହଣା ବହୁତ କିଣିଛନ୍ତି ନିଜପାଇଁ ଓ ଉପହାର ଦେଇଛନ୍ତି ମଧ ଶାଶୁ ଓ ନଣନ୍ଦ ମାନଙ୍କୁ । ସେମାନେ ହୁଏତ ଭୁଲି ଯାଇଥିବେ ସୁମିତ୍ରାଙ୍କ ମନରେ ଦେଇଥିବା ଆଘାତର କଥା । କଅଁଳିଆ ବୟସର ସେ ଶକ୍ତ ଆଘାତକୁ କିନ୍ତୁ ସୁମିତ୍ରା

ଭୁଲି ନଥିଲେ ଆଉ ସେଇଥିପାଇଁ ଦୁଇବର୍ଷ ଆଗେ ଯେତେବେଳେ ଝିଅ ମାମାଲିର ବାହାଘର କରିଥିଲେ ସେତେବେଳେ ଝିଅକୁ ଦେଇଥିଲେ ଅପର୍ଯ୍ୟାପ୍ତ ଯୌତୁକ । ନଣନ୍ଦ ପୁଟୁଳୀରେ ଦେଇଥିଲେ ସୁଟ୍‌କେସ୍ ଭର୍ତ୍ତି ଶାଢ଼ୀ ଓ ଗହଣା ସେଟ୍ ।

ମାମାଲିର ବାହାଘର ପରେ ଯେଉଁଠାରେ ନୂଆ ଡ଼ିଜାଇନର ଗହଣା ଦେଖୁଛନ୍ତି କିଣିଆଣିଛନ୍ତି ମିଟୁର ସ୍ତ୍ରୀ ପାଇଁ । ମନ ଭିତରେ ସବୁବେଳେ ଭାବିଛନ୍ତି ଯିଏ ଏ ଘରକୁ ବୋହୂ ହୋଇ ଆସିବ ତାକୁ ଯେମିତି ଉପଯୁକ୍ତ ସମ୍ମାନ ଓ ସ୍ନେହ ମିଳେ । କିନ୍ତୁ ମିଟୁ ଏ ଯେଉଁ ପରିସ୍ଥିତି କରିଦେଲା ସିଏ ନିଜ କଥା ରଖି ପାରିବେତ ?

ମିଟୁ କେତେବେଳରୁ ଆସି ତାଙ୍କ ପଛରେ ଠିଆ ହେଲାଣି ସୁମିତ୍ରା ଜାଣିପାରିନାହାନ୍ତି, ସେ ସତେ ଯେମିତି ଜଡ ପାଲଟି ଯାଉଛନ୍ତି । ମିଟୁ ମାକୁ ହଲାଇଦେଇ ଅପରାଧୀ ଭଳି କହିବାକୁ ଲାଗିଲା 'ମା, ମୋ ସାମ୍ନାରେ ଅନ୍ୟ କୌଣସି ରାସ୍ତା ନଥିଲା , ମୋତେ ଲାଗିଲା ପ୍ରିୟା କେରଳ ଚାଲିଗଲା ପରେ ମୁଁ ଆଉ ତାକୁ ପାଇ ପାରିବିନି । ପ୍ରିୟା ବିନା ମୁଁ ବଞ୍ଚି ପାରିନଥାନ୍ତି । ତେଣୁ ସବୁଦୋଷ ମୋର । ତୁମେ ପ୍ରିୟା ଉପରେ ରାଗନି । ମୁଁ ତାକୁ ଭଲପାଏ !'

ସ୍ନେହରେ ପୁଅ ମୁଣ୍ଡରେ ହାତ ବୁଲାଇ ଆଣି ସୁମିତ୍ରା କହିଲେ 'ବାବାରେ, ତୁ ମୋର ପ୍ରାଣ । ଆଉ ତୁ ଯାହାକୁ ଭଲପାଉ ସିଏ ମୋର ପ୍ରାଣଠୁ ଅଧିକ । ତେଣୁ ମୁଁ ତା ଉପରେ ରାଗିବି କେମିତି ?' ମିଟୁ ମୁହଁର ଉଜ୍ଜ୍ୱଳତା ଫେରି ଆସିଲା । ସୁମିତ୍ରା ଆଲମାରୀ ଖୋଲି ଗହଣା ବାକ୍ସ ଓ ନୂଆଶାଢ଼ୀ ର ଥାକ ଧରି ପ୍ରିୟାପାଖକୁ ଗଲେ । ନିଜ ହାତରେ ଗୋଟି ଗୋଟି କରି ସବୁ ଗହଣା ପିନ୍ଧାଇଦେଲେ ଓ ସ୍ନେହରେ ବୋହୂକୁ ନିଜ ଆଡକୁ ଆଉଜାଇ ନେଇ କହିଲେ 'ଏ ଲାଲ୍ ବନାରସୀ ଶାଢ଼ୀଟି ପିନ୍ଧିପକା । ତୋ ଶ୍ୱଶୁର କୋଉ ମୁହୂର୍ତ୍ତରେ ଆସି ପହଞ୍ଚିଯିବେ ।'



# ସତ୍ପାତ୍ର

ଡାକ୍ତର ସମୀରଙ୍କ ମାରୁତି ଗାଡ଼ିଟିକୁ ପ୍ରତ୍ୟେକ ରବିବାର ଦିନ ତାଙ୍କ ଆୟାର ପୁଅ ମୁନା ଧୋଇଦିଏ । କିନ୍ତୁ ତାଙ୍କର ପଇଁତିରିଶ ବର୍ଷ ତଳର ପୁରୁଣା ରାଲେ ସାଇକେଲଟି ସିଏ ନିଜେ ଧୋଇଧାଇ ତେଲକନାରେ ପୋଛନ୍ତି । ପୋଛି ସାରିଲା ପରେ ସିଟ ଉପରେ ବସି ଘଣ୍ଟି ବଜାନ୍ତି । ଏଇଟା ତାଙ୍କର ପୁରୁଣା ଅଭ୍ୟାସ । ଏ ସାଇକେଲ ସହିତ ଜଡ଼ିତ ଅନେକ ସ୍ମୃତି । ଶୈଶବର, କୈଶୋରର ଓ ଯୌବନର । ସେହି ସ୍ମୃତିକୁ ସତେଜ ରଖିବା ପାଇଁ ପ୍ରତ୍ୟେକ ରବିବାର ଦିନ ବଜାର ସଉଦା ପାଇଁ ଆମ୍ବାଗାନ୍ ଯାଆନ୍ତି ସାଇକେଲରେ । ସେଥିପାଇଁ ଘରେ ପତ୍ନୀ ରୂପା, ଝିଅ ନିତୁ, ପୁଅ ଜିତୁ ସମସ୍ତେ ଅସନ୍ତୁଷ୍ଟ ।

ଆଜି କିନ୍ତୁ ସାଇକେଲର ମୋହ ଛାଡ଼ିବାକୁ ପଡ଼ିବ । ସେ କଥା ଭାବିଲାବେଳକୁ ଛାତି ଭିତରଟା ଫାଙ୍କା ଲାଗୁଛି । ପତ୍ନୀଙ୍କର ତାଗିଦା 'ଏଥର ସହକାରୀ ନିର୍ଦ୍ଦେଶକ ହେଲାଣି । ସାଇକେଲ ଚଢ଼ା ପୂରା ବନ୍ଦ ।' ଲୋକେ କ'ଣ କହିବେ ସେଥିପାଇଁ ତାଙ୍କର ଚିନ୍ତା । ସବୁ ରବିବାର ଭଳି ମନଟା ଆଜି ଭଲ ଲାଗୁନି । କେମିତି ଗୋଟେ ଉଦାସିଆ ଲାଗୁଛି । କାଲିଠାରୁ ନିତୁ ଆସିଛି କଟକରୁ ପୂଜା ପାଇଁ । କଟକରେ ସିଏ ଡାକ୍ତରୀ ପ୍ରଥମ ବର୍ଷର ଛାତ୍ରୀ । ସକାଳ ନ'ଟା ବାଜିଲାଣି କିନ୍ତୁ ସିଏ ଉଠିବ ଦିନ ଦଶଟାରେ । ପୁଅ ଜିତୁ ଯୁକ୍ତ ଦୁଇ ପ୍ରଥମ ବର୍ଷରେ ପଢୁଛି । ସିଏ ରାତିସାରା ପଢ଼ି ପାହାନ୍ତିଆକୁ ଶୁଏ । ତେଣୁ ସିଏ ଡେରିରେ ଉଠିବ । ରୂପା ବି ରବିବାର ଦିନ ଡେରିରେ ଉଠନ୍ତି । ସମୀର କିନ୍ତୁ ଭୋର୍‌ରୁ ଉଠିପଡିଛନ୍ତି । ନିଜେ ଚା କରି ପିଇବା ତାଙ୍କର ପୁରୁଣା ଅଭ୍ୟାସ । ଆଜି ବି ତାହାର ବ୍ୟତିକ୍ରମ ହେଇନି । ବାହାରେ ବସି ଖବର କାଗଜ ଦେଖୁଛନ୍ତି । ରୋଷେଇ ଘରୁ ଟୁଂ ଟାଂ ଶବ୍ଦ ଶୁଭୁଛି । ରୂପା ବୋଧେ ସକାଳ ଜଳଖିଆ ତିଆରି କାମରେ ଲାଗିଛନ୍ତି ।

ରୂପା ପାଖକୁ ଆସି ପଚାରିଲେ 'ଜଳଖିଆ ଆଣିବି କି ?' ଜଣେଇ ଦେଲେ ଆଜି ସିଏ ପିଜା ବନେଇଛନ୍ତି ବୋଲି । ସମୀର କହିଲେ ମୁଢ଼ି ଦିଟା ଷୋରିଷ ତେଲ ଟିକେ ଗୋଳାଇ ଆଣିବା ପାଇଁ । 'ମୁଢ଼ି ସବୁ ସେପା ହେଇଯାଇଛି' ରାଗିକି କହିଲେ ରୂପା । ସମୀର କିନ୍ତୁ ଛାଡ଼ିବା ଲୋକ ନୁହଁନ୍ତି । କହିଲେ ଓ.ଟି.ଜିରେ ଟିକେ ସମୟ ରଖିଦେଲେ ମୁଢ଼ି ମୁସୁମୁସିଆ ହେଇଯିବ । ଘରେ ତାଙ୍କ ଛଡା ଆଉ କେହି ମୁଢ଼ି ଖାଆନ୍ତିନି । ସମୀରଙ୍କ ମନେ ପଡ଼ିଲା, ପିଲାଦିନେ ଏଇ ସାଇକେଲରେ ସି ଏ କେମିତି ଚେମେଣି ଭଳି ଓହଳି ଓହଳି ନାରଣ ମା ଘରୁ

ମୁଢ଼ି ଆଣୁଥିଲେ । ଆଠଣିଟେ ନେଇକି ଛ'ଣାର ମୁଢ଼ି ଓ ଦୁଇ ଅଣାର ମସଲା ବୁଟ କିଣି ସାଇକେଲରେ ଝୁଲାଇ ଫେରୁଥିଲେ । ରବିବାର ଦିନ ଚାରି ଭାଇ ଭଉଣୀଙ୍କର ସେଇ ଥିଲା ଜଳଖିଆ । ଯେବେଠାରୁ ମିହିର ଭାଇନାଙ୍କ ସାଇକେଲ କିଣା ହୋଇଥିଲା ତା ପରଠୁ ସମୀର ଚାଲି ଚାଲି ଆଉ କିଛି ବଜାର କାମ କରୁନଥିଲେ । ସେତେବେଳେ ଲାଗୁଥିଲା ପୂରା କଟକ ସହରଟାକୁ ଟେକି ଆଣିବେ ସାଇକେଲ୍‌ରେ ।

ଭାଇନା ଯେତେବେଳେ ମାଟ୍ରିକ୍ ପାଶ କରି ରେଭେନ୍ସାରେ ନାଁ ଲେଖେଇଲେ ସେତେବେଳେ ଜିଦ୍ କରିଥିଲେ ସାଇକେଲ ପାଇଁ । ପାଞ୍ଚ ବର୍ଷ ପର୍ଯ୍ୟନ୍ତ ବାପା, ମାଙ୍କର ଗୋଟିଏ ସନ୍ତାନ ହୋଇଥିବାରୁ ବେଶି ଗେଲ ବସର ହେଉଥିଲେ । ବାପା ଥିଲେ ନିମ୍ନ ମଧ୍ୟମିର ପରିବାରର । ତେଣୁ ସାଇକେଲ ଟିଏ କିଣିବା ପାଇଁ ଖର୍ଚ୍ଚ କାଟ କରିବାକୁ ପଡ଼ିଥିଲା । ଯାହାହେଉ ଶେଷରେ ସାଇକେଲ କିଣା ହେଲା । ଚୌଧୁରୀ ବଜାରରୁ ସାଇକେଲଟିଏ ବାପା ସନ୍ଧ୍ୟାବେଳେ ଆଣିଥିଲେ । ଚାରି ଭାଇ ଭଉଣୀ ମିଶି ରାତି ଅଧଯାଏ ସାଇକେଲଟିର ସବୁ ଅଂଶ ହାତ ମାରି ମାରି ପରୀକ୍ଷା କରି ଦେଖିଥିଲେ । ତା ପରଦିନ ସମୀରଙ୍କ ନିଦ ପାହାନ୍ତିଆରୁ ଭାଙ୍ଗି ଯାଇଥିଲା । ଦାନ୍ତ ନ ଘଷି ପ୍ରଥମେ ପହଞ୍ଚିଥିଲେ ସାଇକେଲ ପାଖରେ, ଦିନରେ କେମିତି ଦିଶୁଛି ବୋଲି । ସେତେବେଳେ ସିଏ ପଢୁଥିଲେ ଅଷ୍ଟମ ଶ୍ରେଣୀରେ । ଭାଇନା ବଜାର ସଉଦା କରନ୍ତିନି । ସମୀରଙ୍କ ତଳେ ଦୁଇ ଭଉଣୀ ମିନି ଓ କୁନି ଦୁଇ ଦୁଇ ବର୍ଷ ବ୍ୟବଧାନରେ । ଯେହେତୁ ସେମାନେ ଝିଅ ସେଥିପାଇଁ ସମୀରଙ୍କୁ ହିଁ ସବୁ ବଜାର ସଉଦା କରିବାକୁ ପଡୁଥିଲା । ସେଥିପାଇଁ ବେଳେ ବେଳେ ରାଗୁଥିଲେ ସମୀର । କିନ୍ତୁ ସାଇକେଲ ଆସିବା ପରଠାରୁ ଆଉ ରାଗୁନଥିଲେ । ଯେତେବେଳେ ଯିଏ ଯାହା କାମ ପାଇଁ ପଠାଇଲେ ଖୁସିରେ କରୁଥିଲେ । ଭାଗବତ ସାହୁ ଦୋକାନରୁ ବରା ଆଣିବାଠାରୁ ରିକ୍ସା ଡାକିବା ପର୍ଯ୍ୟନ୍ତ । ଅବଶ୍ୟ ସାଇକେଲଟିର ଯତ୍ନ ମାନେ ପୋଛିବା, ପମ୍ପ ଦେବା, ପଙ୍କଚର ତିଆରି କରାଇବା, ବ୍ରେକ୍ ନ ଧରିଲେ ସାଇକେଲ ଦୋକାନ ନେଇ ସଜାଡ଼ିବା ଇତ୍ୟାଦି ସବୁ କରୁଥିଲେ ସମୀର । ଦୁଇବର୍ଷ ପରେ ଭାଇନା ବୁର୍ଲା ଚାଲିଗଲେ ପଢ଼ିବା ପାଇଁ । ତା ପରଠୁ ସାଇକେଲଟି ହେଇଯାଇଥିଲା ସମୀରଙ୍କର । ସେତେବେଳକୁ ସିଟ୍ ଉପରେ ବସି ଚଳାଇବା ଶିଖି ଯାଇଥିଲେ । ସବୁଠାରୁ ମଜା ଲାଗୁଥିଲା ଯେତେବେଳେ ସିଟ୍‌ରେ ବସି ଜୋର୍‌ରେ ସାଇକେଲ ଚଲାଇଲାବେଳେ ସିର୍ ସିର୍ ପବନ ଦେହ ଓ ମୁହଁରେ ବାଜି ଚୁଟି ସବୁ ପଛକୁ ହେଇଯାଏ । ସେତେବେଳେ ଲାଗେ ସିଏ ରାଜକୁମାର ପାଇଟି ଯାଉଛନ୍ତି । ଆକାଶ ମାର୍ଗରେ ମନ ପବନ

ଘୋଡ଼ାରେ ଚଢ଼ି ଉଡୁଛନ୍ତି । ସାଇକେଲ ଚଲାଇବାବେଳେ କେତେଥର ଯେ ପଡ଼ି ଖଣ୍ଡିଆ ଖାବରା ହୋଇଛନ୍ତି ତାହାର ହିସାବ ନାହିଁ । ସେ ଚିହ୍ନ ସବୁ ଏବେ ବି ଆଣ୍ଠୁରେ, ଓଠରେ ଅଛି ।

ସମୟ ଗଡ଼ିଯାଇଛି । ଏବେ ସମୀରଙ୍କୁ ପଚାଶ ଛୁଇଁଲାଣି । ତଥାପି ରବିବାର ଦିନ ସାଇକେଲ ଚଲାତି । ସକାଳେ ସମସ୍ତେ ଶୋଇଥିଲାବେଳେ ବଜାର ପଳାନ୍ତି । ପୁଅ ଝିଅଙ୍କ ସାଙ୍ଗମାନେ ଦେଖିଲେ ସେମାନଙ୍କୁ କୁଆଡେ ବହୁତ ଲାଜ ଲାଗେ । ଆଗେ ଶଳା ଶାଳୀ ମାନେ ଥଟ୍ଟା କରୁଥିଲେ କଂଜୁସ ବୋଲି । ମରହଟିଆ ବୋଲି । ଆଜିକାଲି ଶଳା ଭାଉଜ ଓ ଝିଅ ପତ୍ନୀଙ୍କୁ ଚିଡାନ୍ତି । ସେଥିପାଇଁ ରୂପା ରାଗିଯା'ନ୍ତି । କହନ୍ତି 'ସ୍କୁଟର ବିକ୍ରିକଲ । ଗାଡ଼ି ତିନିଥର ବିକ୍ରି କରି ଚାରିଥର କିଣିଲଣି । ଅଥଚ ଏ ପୁରୁଣା ସାଇକେଲ ଖଣ୍ଡକରେ କି ରସ ଲାଗିଛି ଯେ ତାକୁ ଛାଡ଼ି ପାରୁନ ।''

ସତରେ ରସ ଲାଗିଛି । ସେ ରସ ମଧୁର ସ୍ମୃତିର । ସ୍କୁଲ ପରେ କଲେଜ ସେଇଥିରେ ଯାଉଥିଲେ । ତା ପରେ କଟକ ମେଡ଼ିକାଲରେ ପାଞ୍ଚବର୍ଷ । ପ୍ରଥମ ଚାକିରୀ ଜୀବନ ବି ଆରମ୍ଭ ହୋଇଥିଲା ସେଥିରେ । ମନେ ଅଛି ପ୍ରଥମେ ପି.ଏସ୍.ସି. ପାଇଁ ଯେତେବେଳେ ରାଉରକେଲା ଆସିଥିଲେ ସାଙ୍ଗରେ ଥିଲା ଟିଣ ଟ୍ରଙ୍କ ଖଣ୍ଡେ, ବିଛଣା ଓ ଏଇ ସାଇକେଲ୍‌ଟି । ସେତେବେଳେ ତାଙ୍କ ବୟସ ଥିଲା ମାତ୍ର ପଚିଶ । ପ୍ରଥମେ ସମ୍ପର୍କୀୟା ମାଉସୀଙ୍କ ଘରେ କିଛିଦିନ ରହିଥିଲେ । ପରେ ଉଦିତ ନଗରରେ ଭଡ଼ାଘରେ ରହି ସାଇକେଲରେ ଯିବା ଆସିବା କରୁଥିଲେ ପାନପୋଷ ଚିକିତ୍ସା କେନ୍ଦ୍ରକୁ । ଏଠି ଆସି ଦେଖିଲେ ମଧବିତ୍ତ ପରିବାରର ଲୋକେ ସାଇକେଲ ପ୍ରାୟ ଚଳାନ୍ତିନି କହିଲେ ଚଳେ । ଡାକ୍ତର ମିଶ୍ର, ଯାହାଙ୍କ ଅଧୀନରେ ସେ କାମ କରୁଥିଲେ ଦିନେ କଥା ଛଳରେ କହିଲେ 'ସମୀର, ଏଥର ଆଉ ଛାତ୍ର ନୁହଁ ତୁମେ । ଚାକିରୀ କଲଣି, ସ୍କୁଟର ଖଣ୍ଡିଏ କିଣ ।' ସେତେବେଳେ ଦରମା ମିଳୁଥିଲା ସାତସହ ପଚାଶ ଟଙ୍କା । ସ୍କୁଟର ଦାମ ଥିଲା ପାଞ୍ଚ ହଜାର । ଡାକ୍ତର ମିଶ୍ରଙ୍କ ତତ୍ତ୍ୱାବଧାନରେ ବ୍ୟାଙ୍କରୁ ଟଙ୍କା ଉଧାର କରି ବଜାଜ ସ୍କୁଟର ଟିଏ କିଣିଥିଲେ । ସ୍କୁଟର ଆଣିଲା ପରେ ମଧ କେଜାଣି କାହିଁକି ସାଇକେଲ ଟିକୁ ବିକ୍ରି କରିନଥିଲେ । ଡାକ୍ତର ମିଶ୍ର ସମୀରଙ୍କୁ ଅତ୍ୟଧିକ ସ୍ନେହ କରୁଥିଲେ ସମୀରଙ୍କ ଶାନ୍ତ, ସରଳ ଓ ସଚ୍ଚୋଟ ଗୁଣ ପାଇଁ । ଡାକ୍ତର ମିଶ୍ର ଥିଲେ ବୟସ୍କ ଓ ଅମାୟିକ ଭଦ୍ରଲୋକ । ସେଥିପାଇଁ ତାଙ୍କ ବଡ଼ଭାଇ ଯିଏ କି ଷ୍ଟିଲ୍‌ପାଣ୍ଟରେ ପଦସ୍ଥ ଅଫିସର ଥିଲେ, ତାଙ୍କରି ଝିଅ ପାଇଁ ସମୀରଙ୍କ ଆଗେ ପ୍ରସ୍ତାବ ରଖିଥିଲେ । ସଲ୍ଲଜ ହସ ହସି ସମୀର କହିଥିଲେ 'ବାପା ବୋଉ ଯାହାକୁ ଠିକ୍ କରିବେ ।'

ସାନ ଦୁଇ ଭଉଣୀଙ୍କ ବାହାଘର ସମୀର ମେଡ଼ିକାଲ ପଢ଼ିଲାବେଳେ ହୋଇ ସାରିଥିଲା ଓ ରାଉରକେଲା ଆସିବାର ଠିକ୍ ଆଗରୁ ଭାଇନାଙ୍କ ବାହାଘର । ତେଣୁ ବାପା ବୋଉଙ୍କର ଏ ପ୍ରସ୍ତାବ ମନା କରିବାର କୌଣସି କାରଣ ନଥିଲା । ରୂପା ଜନ୍ମ ହୋଇଥିଲେ ଓ ପଢ଼ିଥିଲେ ରାଉରକେଲାରେ । ଦେଖିବାକୁ ସୁନ୍ଦର, ପଢ଼ିଥିଲେ ଇଂରାଜୀ ମାଧ୍ୟମ ସ୍କୁଲରେ । ଏଠିକୁ ଆସିବାର ଦୁଇବର୍ଷପରେ ତାଙ୍କ ବାହାଘର ହୋଇଯାଇଥିଲା । ତା ପରେ ଶ୍ୱଶୁର ଘରର ସମସ୍ତଙ୍କ ମନ ଖୁସି କରିବା ପାଇଁ ସିଏ ସରକାରୀ ଚାକିରୀ ଛାଡ଼ି ଆଇ.ଜି.ଏଚ୍.ରେ ଯୋଗ ଦେଇଥିଲେ । ସେଠି ଯୋଗ ଦେବା ପରେ ପ୍ଲାଣ୍ଟରୁ ଉଧାର ଆଣି ଓ ସ୍କୁଟର ବିକି କିଣିଥିଲେ ପୁରୁଣା ଫିଏଟ ଗାଡ଼ିଟିଏ । କଳା ରଙ୍ଗର ପୁରୁଣା ମଡ଼େଲ । ତାରି ଭିତରେ ପୁଅ ଝିଅଙ୍କର ଜନ୍ମ । ପରେ ବୁର୍ଲାରେ ପି.ଜି. କରିଛନ୍ତି । ବୁର୍ଲାରେ ତିନିବର୍ଷ ରହିଲାବେଳେ ସାଙ୍ଗରେ ସାଇକେଲଟିକୁ ନେଇଯାଇଥିଲେ । ପରେ ପରେ ପୁଣି ଦୁଇଥର ଗାଡ଼ି ବିକ୍ରି କରି କିଣିଛନ୍ତି ପୁରୁଣା ମାରୁତି ଓ ପରେ ନୂଆ ମାରୁତି । ହେଲେ ବି ନିଜର ସାଇକେଲଟିକୁ ଛାଡ଼ି ପାରି ନାହାନ୍ତି ଦିନକ ପାଇଁ ।

ଝିଅ ନିତୁ ପଞ୍ଚମରେ ପଢ଼ିଲାବେଳେ ତାର ସାଇକେଲ କିଣା ହେଲା । ସମୀର ନିଜେ ଯାଇ ପୁରୁଣା ରାଉରକେଲାରୁ ଚଲେଇ ଚଲେଇ ଘର ଯାଏ ଆଣିଥିଲେ । ପତ୍ନୀ ରୂପା ବିରକ୍ତ ହୋଇଥିଲେ କାରଣ ଏଠି ସମସ୍ତେ ତାଙ୍କ ବାପାଙ୍କୁ ଚିହ୍ନନ୍ତି । ତାର ଦୁଇବର୍ଷ ପରେ ପୁଅ ଜିତୁର ସାଇକେଲ କିଣା । ଏଥର କିନ୍ତୁ ଦୋକାନୀ ଅଧିକ ଟଙ୍କା ନେଇ ଘରେ ସାଇକେଲ ପହଞ୍ଚାଇ ଦେଇଥିଲା । ନିତୁକୁ ଯେତେବେଳେ କହିଥିଲେ ପୁରୁଣା ସାଇକେଲଟି ଚଲାଇବା ପାଇଁ ସିଏ କହିଲା ତାର ଲେଡ଼ିଜ ସାଇକେଲ ଦରକାର । ପୁଅକୁ କହିଲାବେଳେ ଜିତୁ କହିଲା ସ୍କୁଲରେ ଏ ସାଇକେଲ ଦେଖିଲେ ସମସ୍ତେ ଥଟ୍ଟା କରିବେ ଓ ହସିବେ ।

ଝିଅ ଯୁକ୍ତ ଦୁଇ ପଢ଼ିଲାବେଳେ ଜିଦ୍ କରି ନାଲି ରଙ୍ଗର ସ୍କୁଟି କିଣିଲା । ଠିକ୍ ତା ପରଦିନ ଗ୍ୟାରେଜରେ ଗାଡ଼ି ରଖୁ ରଖୁ ଦେଖିଲେ ନିତୁର ପୁରୁଣା ସାଇକେଲଟି ନାହିଁ । ଘରକୁ ଆସି ପଚାରିବାରୁ ରୂପା କହିଲେ ସେ ସାଇକେଲ ବଦଳରେ ବେଙ୍ଗଲ ହ୍ୟାଣ୍ଡଲୁମ୍‌ର ଶାଢ଼ୀ କିଣିଛନ୍ତି । ବୁଝୁ ବୁଝୁ ପଛଘର ଆୟା କୋଏଲ ନଗର କାମ କରିଯିବା ପାଇଁ ତିନିଶହ ଟଙ୍କାରେ ରୂପାଙ୍କ ଠାରୁ ସାଇକେଲଟି କିଣିଛି । ସମୀର ବିରକ୍ତ ହେଲେ, ଗରୀବ ଲୋକଙ୍କଠାରୁ ଅଯଥାରେ ଟଙ୍କା ନ ନେଇ ସେମିତି ଦେଇଥିଲେ ହେଇଥା'ନ୍ତା । ପତ୍ନୀ କହିଲେ ଯାହାଘରେ ସିଏ କାମ କରୁଛି ସେମାନେ ଅଗ୍ରୀମ ଟଙ୍କା ଦେଇଥିଲେ । ସେ ପୁଣି କହି ରଖିଛି ଦୁଇବର୍ଷ

ପରେ ଜିତୁର ସାଇକେଲଟି ତାର ସ୍ୱାମୀ ନେବ । ସିଏ ବି କୋଏଲ ନଗରର ମାଳି କାମ କରୁଛି । ସେଠି କାମ କଲେ କୁଆଡେ ସେମାନଙ୍କୁ ବେଶି ପଇସା ମିଳୁଛି ।

ପୁଅର ଦଶମ ସରିଲାବେଳକୁ ନିତୁ ଚାଲିଗଲାଣି କଟକ ଡାକ୍ତରୀ ପଢ଼ିବାକୁ । ପୁଅ ଜିତୁ କିନ୍ତୁ ଜମାରୁ ନିତୁର ସ୍କୁଟି ଚଳାଇବାକୁ ରାଜି ହେଲାନି । ସମୀର ଏଥର ପୂରା ମନା କରିଦେଇଥିଲେ । କହିଥିଲେ 'ତତେ ଯେମିତି ହେଲେ ଦୁଇବର୍ଷ ଏହି ସ୍କୁଟିରେ ବିତାଇବାକୁ ପଡ଼ିବ । ନ ହେଲେ ସାଇକେଲ ଚଳା' । ଜିତୁ ରୁଷି କି ଶୋଇଥିଲା । ବହୁତ ଘରେ ଗଣ୍ଡଗୋଳ ହେଇଥିଲା । ଅଜା, ମାମୁ, ମା, ଆଈ ସମସ୍ତେ ଜିତୁ ପଟିଆ ବାହାରିଥିଲେ । ତେଣୁ ବାଧ ହୋଇ ବାଳିଶ ହଜାର ଦିଆ ହୋଇ ହିରୋ ଷ୍ଟ୍ରିଟ୍ କିଣାହେଲା । ଆଶ୍ଚର୍ଯ୍ୟ ହୋଇଥିଲେ ସମୀର ସିଏ କାହିଁକି ସମସ୍ତଙ୍କ ଠାରୁ ଭିନ୍ନ ? କାହିଁକି ସିଏ ଏ ପର୍ଯ୍ୟନ୍ତ ସେଇ ପଚିଁତିରିଶ ବର୍ଷ ତଳର ସାଇକେଲର ମୋହ ତୁଟାଇ ପାରୁ ନାହାନ୍ତି । ଏ ଯୁଗର ପିଲାମାନଙ୍କର ସବୁ ନୂଆ ଦରକାର । ଝିଅର ବହି ପୁଅ ଜମା ପଢ଼େନି । ସବୁବେଳେ ନୂଆ ବହି କିଣାହୁଏ ତା ପାଇଁ । ଅଥଚ ସମୀରଙ୍କ ଅଧା ଜୀବନ କଟିଛି ପୁରୁଣା ଜିନିଷ ବ୍ୟବହାର କରି କରି । ପୁରୁଣା ସିଲଟ ଠାରୁ ଆରମ୍ଭ କରି ସାର୍ଟ, ପ୍ୟାଣ୍ଟ, ସ୍ୱେଟର୍, ସାଇକେଲ ଯାଏ । ଭାଇନାଙ୍କର ସବୁ ପୁରୁଣା ବ୍ୟବହୃତ ଜିନିଷ ବୋଉ ସାଇତି କି ରଖିଦେଇଥାଏ । ପ୍ରଥମ ଥର ପାଇଁ ବୋଧେ ମେଡ଼ିକାଲ ପଢ଼ିଲାବେଳେ ନୂଆ ବହି ପଢ଼ିଥିଲେ । ଅଖାଡୁଆ ବି ଲାଗିଥିଲା ତାକୁ ।

ଜିତୁର ପୁରୁଣା ସାଇକେଲଟି ରୂପା ପଠାଇ ଦେଇଥିଲେ କୋଏଲ ନଗରରେ ରହୁଥିବା ତାଙ୍କ ବାପାଙ୍କ ଘରକୁ । ସେଠାରେ ତାଙ୍କ ଘରେ କାମ କରୁଥିବା ପିଲାର ସାଇକେଲ ନଥିବାରୁ ସଉଦା କରିବାକୁ ଅସୁବିଧା ହେଉଛି । ବେଶ୍ ହୁସିଆର ହେଇଯାଇଥିଲେ ରୂପା । ଆଉ ସାଇକେଲ ବଦଳରେ ମାଆଙ୍କ ଠାରୁ ଗୋଟେ ନୂଆ ସମ୍ବଲପୁରୀ ଶାଢ଼ୀ ଆଦାୟ କରିଥିଲେ । ଏ କଥା ନିତୁ ଆବିଷ୍କାର କରିଥିଲା । ରୂପା ଝିଅ ସାଙ୍ଗେ ସାଙ୍ଗେ କଥା ହେଉ ହେଉ ସବୁ ବଖାଣି ଦେଇଥିଲେ ।

'ଜଳଖିଆ ଦେଲିଣି, ଆସ' ପତ୍ନୀଙ୍କ କଥାରେ ଧ୍ୟାନ ଭଗ୍ନ ହେଲା ସମୀରଙ୍କର । ବାହାର ବାରଣ୍ଡାରୁ ଭିତରକୁ ଆସି ଦେଖିଲେ ଖାଇବା ଟେବୁଲ ଉପରେ ମୁଢ଼ି ବଦଳରେ ପ୍ଲେଟ୍‌ରେ ରଖାହେଛି ପିଜା । ପାଖରେ ଛୁରୀ ଓ କଣ୍ଟା ଚାମଚ ।

'ମୁଢ଼ି ଦେବାକୁ କହିଲି ପରା-'

'ମୁଢ଼ି କ'ଣ ଖାଇବ ମ-ଘଣ୍ଟାଏ ଲାଗିବ ଚୋବାଇବାକୁ । ତା ଛଡ଼ା ଫ୍ୟାନ ପବନରେ ଉଡ଼ି ଘରଦ୍ୱାର ମଇଳା ହେବ । ଏତେ ପରିଶ୍ରମ କରି ପିଜ୍ଜା କରିଛି, ଟିକେ ଚାଖ ।'

ପିଜ୍ଜାରୁ ଖଣ୍ଡେ କାଟି ପାଟିରେ ଦେଇ ଦୁଇଥର ପାଟିରେ ଏପଟ ସେପଟ କଲାପରେ ଭାବିଲେ ଇଏତ ଠିକ୍ ପାଉଁରୁଟି ଭଳି ଲାଗୁଛି । ମୁଢ଼ିର ସ୍ୱାଦ ଏଥିରେ କାହିଁ ? ଉପରେ କହିଲେ 'ଭଲ ହେଇଚି ରଖିଦିଅ, ପିଲାମାନେ ଉଠିଲେ ଖୁସିରେ ଖାଇବେ ।'

ସମୀର ରୋଷେଇ ଘରକୁ ଯାଇ ମୁଢ଼ି ଡବାରୁ ମୁଢ଼ି କାଢ଼ି ଦେଖିଲେ ମୁଢ଼ି ଆଦୌ ନରମ ହେଇନି । ରୂପା ମିଛ କହୁଥିଲେ । ବେଲାରେ ମୁଢ଼ି କାଢ଼ି ସେଥିରେ ଷୋରିଷ ତେଲ ଗୋଳାଇ ପକାଇଲେ ନିଜେ ନିଜେ । ବଡ଼ ପିଆଜକୁ ଚାରି ଖଣ୍ଡ କରି କାଟିଲେ ଓ ଫ୍ରିଜରୁ ଗୋଟେ କଞ୍ଚା ଲଙ୍କା ନେଇ ସେଥିରେ ପକାଇ ଅଗଣାକୁ ଚାଲିଗଲେ । ସେଠି ଫୋଲ୍ଡିଂ ଚୌକି ଉପରେ ବସି ଆରାମ କରି ନିଜସ୍ୱ ଢଙ୍ଗରେ ମୁଢ଼ି ଖାଇବାକୁ ଲାଗିଲେ । ଶୀତ ଦିନେ କଟକ ଘରେ ଖରାକୁ ପିଠି କରି ଏମିତି ମୁଢ଼ି ଖାଉଥିଲେ ଭାଇ ଭଉଣୀ ମିଶି । ବର୍ଷା ଦିନେ ମଝି ଘର ଖଟରେ ଗରମ ଗରମ ପକୁଡି ସାଙ୍ଗରେ ଓ ଖରାଦିନେ ସନ୍ଧ୍ୟାବେଳେ ଦଉଡ଼ିଆ ଖଟରେ । ସେ ସବୁ ଅଭୁଲା ସ୍ମୃତି ଆଖି ଆଗରେ ନାଚିଗଲା । କୁଆଡ଼େ ହଜିଗଲା ସେ ଦିନ ସବୁ ? ନା ନା ହଜିନି, ହୃଦୟର କେଉଁ କୋଣରେ ସାଇତି ରଖିଛନ୍ତି ତାକୁ । ନିରୋଳାରେ ସେ ସବୁ କଥା ମନେ ପକାଇବାକୁ ଭାରି ଭଲ ଲାଗେ ।

ରୂପା ଆସି କହିଲେ ମାଳି ତା ପୁଅକୁ ସାଙ୍ଗରେ ଆଣି ଆସିଛି ସମୀରଙ୍କ ସାଙ୍ଗେ ଦେଖା କରିବାକୁ । ଅନ୍ୟ ମନସ୍କ ହୋଇ କେତେବେଳେ ମୁଢ଼ି ତକ ଖାଇ ଖାରିଲେଣି ଜାଣି ପାରିନାହାନ୍ତି ସମୀର । ସାଇକେଲ ବିକ୍ରି ପାଇଁ ଗରାଖ ଠିକ୍ କରି ସାରିଲେଣି ମା, ପିଲା ମିଶି । ସାଇକେଲଟି ଯଦି ବିକ୍ରି ନହୁଏ ସମସ୍ତେ ମିଶି ଅସହଯୋଗ ଆନ୍ଦୋଳନ କରିବେ । ନ ବିକିବା ପାଇଁ ବହୁତ ଯୁକ୍ତି କରିଥିଲେ, କହିଥିଲେ ଗାଁରୁ କିଏ କେତେବେଳେ ଆସିଲେ ଚଲାଇବେ । ଦୁଇ ଭଣଜା ଏଠାକାର ଆର୍.ଏସ୍.ପିରେ ଟ୍ରେନିଂ ନେଲାବେଳେ ମାସେ ମାସେ ଖରାଛୁଟିରେ ଚଳାଇଥିଲେ ଏବଂ ଆଶ୍ଚର୍ଯ୍ୟ ହୋଇଥିଲେ ପୁରୁଣା ସାଇକେଲଟି ଦେଖି । ତେଣୁ ଭବିଷ୍ୟତରେ କେତେବେଳେ କାହାର ଦରକାରରେ ହୁଏତ ଆସିପାରେ । କିନ୍ତୁ ରୂପା ଠିକ୍ କରି ଦେଇଛନ୍ତି ମାଳିକୁ । ତାର ପୁଅ ଏ ବର୍ଷ ମାଟ୍ରିକ୍ ପ୍ରଥମ ଶ୍ରେଣୀରେ ପାଶ୍ କରିଛି । ପାନପୋଷ କଲେଜରେ ନାଁ ଲେଖାଇଛି, ଯିବା ଆସିବା ଅସୁବିଧା ହେଉଛି । ତେଣୁ ସିଏ ତା ପୁଅ ପାଇଁ ସାଇକେଲଟି କିଣିବ ।

ରୂପାଙ୍କୁ ତା ପାଇଁ ବରାଦ କରି ଅଗଣାରୁ ବୈଠକଘର ଦେଇ ବାହାରକୁ ଆସିଲେ ସମୀର । ଦେଖିଲେ ମାଳି ପାଖରେ ପରିଷ୍କାର ପରିଚ୍ଛନ୍ନ ପନ୍ଦର ଷୋଳ ବର୍ଷର ଡଉଲ ଡାଉଲ ପିଲାଟିଏ । କଳା ଭଅଁର ପରି ତାର ଆଖି ଦୁଇଟି ଚିହ୍ନା ଚିହ୍ନା ଲାଗିଲା । ଲାଜେଇପଡ଼ି ମାଳି ଓ ତା ପୁଅ ଦୁହେଁ ନମସ୍କାର କଲେ ସମୀରଙ୍କୁ । ମାଳି କହିଚାଲିଲା କେମିତି କଷ୍ଟରେ ତା ପୁଅ ପାଠ ପଢ଼େ, ଅଥଚ କେତେ ଭଲ ପଢ଼େ । ପୁରୁଣା ବହି, ପୁରୁଣା ସାର୍ଟ ପ୍ୟାଣ୍ଟ, ଜୋତା ସବୁ ବାବୁ ଘରୁ ମାଗିମାଗି ତାକୁ ଦିଏ ସିଏ । ପିଲାଟିକୁ ଦେଖିଲାପରେ ସମୀରଙ୍କୁ ଲାଗିଲା ଯାହାକୁ ଏତେ ବର୍ଷ ଧରି ଖୋଜୁଥିଲେ ସିଏ ମିଳିଗଲା ଅବା । ଗ୍ୟାରେଜରୁ ସାଇକେଲ ଆଣିବାପାଇଁ ମାଳିକୁ କହିଲେ । ମାଳିର ପୁଅଟି ଦୌଡ଼ିଯାଇ ବାପହାତରୁ ଛଡ଼ାଇ ସାଇକଲଟି ଚଲାଇ ଚଲାଇ ନେଇ ଆସିଲା ଘର ସାମନାକୁ । ସମୀରଙ୍କୁ ସେଇ ପିଲାଟି ଭିତରେ ସତେ ଅବା ପଇଁତିରିଶ ବର୍ଷ ତଳର ସେଇ ରାଜକୁମାରଙ୍କୁ ଦେଖୁଛନ୍ତି ଯିଏ କି ଏକଦା ମନପବନ ଘୋଡ଼ା ଚଢ଼ି କଟକ ସହର ସାରା ଘୁରି ବୁଲୁଥିଲା । 'ଆଜିଠୁ ଏ ସାଇକେଲ ତୋର' ଭାବପ୍ରବଣ ହୋଇ କହିପକାଇଲେ ସମୀର । ଯେତେ ମନା କଲେ ବି ଧରିଥିବା କେତୋଟି ଶହେ ଟଙ୍କିଆ ନୋଟ ମାଳି ଗୁଞ୍ଜିଦେଲା ଡାକ୍ତର ସମୀରଙ୍କ ହାତରେ । ସେ ଟଙ୍କା ନେଇ ମାଳି ପୁଅର ଛାତି ପକେଟ୍‌ରେ ରଖିଦେଇ ସମୀର କହିଲେ, ଏ ଟଙ୍କା ରଖ୍ 'କଲେଜର ନୂଆ ବହି କଣିବୁ' ।

❑❑❑

# ଅନୁଭବ

ମିତା ଦେଖିଲା ଗୋଟେ ସ୍ତମ୍ଭ ଉପରେଠିଆ ହୋଇ ବାପା ତାକୁ କହୁଛନ୍ତି-ଏ ମା ! ଶିଘ୍ର ମୋ ପାଇଁ ଭାତ ବାଢ଼ିଦେ । ପିନ୍ଧିଛନ୍ତି, ଚନ୍ଦନ ରଂଗର ପଞ୍ଜାବି ଓ ଧୋବ ଫର ଫର ଧୋତି । ତାଙ୍କୁ ଦେଖି ଆଶ୍ଚର୍ଯ୍ୟ ହେଲା ମିତା । ସତ କି ମିଛ ପରଖିବାକୁ ସିଏ ବାପାଙ୍କ ପାଖକୁ ଯାଇ ହାତ ବଢ଼ାଇ ତାଙ୍କୁ ଛୁଇଁବାକୁ ଚେଷ୍ଟା କଲା । ତଳେ ଠିଆ ହୋଇଥିବାରୁ ତାର ହାତ ବାପାଙ୍କ ଆଣ୍ଠୁଯାଏ ଗଲା ଓ ସିଏ ତାଙ୍କ ଧୋତିକୁ ଛୁଇଁଲା । ବାପା ତାକୁ ଅନାଇଁ କହିଲେ- ମିତାବୁଢ଼ି ! ଗରମ ଗରମ ଭାତ ଦେବୁ ।

ଠିକ୍ ଏତିକିବେଳେ ମିତାର ନିଦ ଭାଙ୍ଗିଗଲା ଓ ତା' ସାଂଗେ ସ୍ୱପ୍ନ ବି । ଲାଇଟ୍ ଜଳାଇ ଦେଖିଲା ଚାରିଟା ବାଜିଛି । ପାଖରେ ମିହିର ନିଘୋଡ଼ ନିଦରେ ଶୋଇଛନ୍ତି । ଉପର ପଟ କାନ୍ଥକୁ ଚାହିଁ ଦେଖିଲା ବାପାଙ୍କ ଲାମିନେଟ୍ କରା ଫଟୋରେ ଈଷଦ୍ ହସର ଛିଟା । ଲାଇଟ୍ ଲିଭାଇଲା ମିତା । ସେ ପାରିକୁ ଚାଲିଯାଇଥିବା ଲୋକମାନଙ୍କୁ ଦେଖିଲେ ପ୍ରାୟ ସମସ୍ତେ ଭୟ ପାଆନ୍ତି । ତାକୁ କିନ୍ତୁ ଆଦୌ ଭୟ ଲାଗୁନଥିଲା, ବରଂ ଦୁଃଖ ଲାଗୁଥିଲା କାହିଁକି ନିଦଟା ଭାଙ୍ଗିଗଲା ବୋଲି, ନ ହେଲେ ସିଏ ବାପାଙ୍କ ପାଦକୁ ଟିକେ ଆଉଁସି ଦେଇଥାନ୍ତା ହେଉପଛେ ସ୍ୱପ୍ନରେ ।

ମିତା ଯାହା ଦେଖିଲା ତା' କଣ ସ୍ୱପ୍ନ ଥିଲା ? ନା ସତରେ ବାପାଙ୍କ ଆତ୍ମା ଆସିଥିଲା ତା ପାଖକୁ ? ବାପାଙ୍କୁ ସତରେ ଭୋକ ଲାଗିଛି ? ତା ମନଟା ଗୋଳେଇ ଘାଣ୍ଟି ହେଲା । ଆଜି ଉଣେଇଶ ତାରିଖ । ବାପାଙ୍କ ଦ୍ୱିତୀୟ ବାର୍ଷିକ ଶ୍ରାଦ୍ଧ ଆଉ ଚାରିଦିନ ରହିଲା ତିଥି ଅନୁସାରେ । ଦୁଇବର୍ଷ ପୂର୍ବେ ଜୁନ୍ ପନ୍ଦର ତାରିଖରେ ନବେ ବର୍ଷ ବୟସରେ ବାପାଙ୍କର ଦେହାନ୍ତ ହୋଇଥିଲା । ଶୁଣିଛି ବ୍ରହ୍ମଲୋକର ଗୋଟିଏ ଦିନ ପୃଥିବୀର ବର୍ଷକ ସଂଗେ ସମାନ । ସେଥିପାଇଁ ବର୍ଷକୁ ଥରେ ଶ୍ରାଦ୍ଧ ଦିଆଯାଏ । ଯେହେତୁ ତାରିଖ ଅନୁସାରେ ବାପାଙ୍କ ଶ୍ରାଦ୍ଧ ଚାଲିଗଲାଣି ସେଥିପାଇଁ ବାପାଙ୍କୁ ଭୋକ ଲାଗିଲାଣି ନିଶ୍ଚୟ । ମିତାର ମନେ ଅଛି, ବାପା ଜମାରୁ ଭୋକରେ ରହିପାରନ୍ତିନି । ଏକାଦଶୀ କରନ୍ତି ଯେ ସେଥିପାଇଁ ଘରେ ସମସ୍ତଙ୍କର ଚିନ୍ତା । ସେ ଦିନ ସକାଳେ ବାପା ଫଳାହାର କରନ୍ତି । ଯେ କୌଣସି ଫଳକୁ ଚୋପା ଛଡାଇ ଛୋଟ ଛୋଟ ଖଣ୍ଡ କରି କାଟିଦେଲେ କଣ୍ଟାଚାମଚରେ ଟୁକ୍ ଟୁକ୍ କରି ଖାଆନ୍ତି । ବାପା ହାତରେ ଖାଇବାକୁ ଭଲ ପାଆନ୍ତିନି । ବାରଟା ବେଳେ ଚୂଡ଼ା, କ୍ଷୀର, କଦଳୀ ଚକଟା । ସଂଧ୍ୟାରେ ଚିନି ଦିଆହୋଇ

ଖରଡ଼ା ହୋଇଥିବା ଭଜା ଛେନା ଆଉ ରାତିରେ ବାପାଙ୍କର ସବୁଠାରୁ ପ୍ରିୟ ମାଇପୁଆ ଓ ଆଳୁଭଜା । ତା ଛଡ଼ା ଦିନ ସାରା ଯେତେ ଲେମ୍ବୁ ସରବତ ହେଇପାରିଲା । ବାପାଙ୍କର ଏ ଖାଇବା ଦେଖି ବୋଉ ଚିଡ଼ାଏ-ଏମିତି ଖାଇବା ମିଳିଲେ ସିଏ କୁଆଡେ ବର୍ଷସାରା ଉପାସ କରନ୍ତା । ଉପାସ ବାସି ଦିନ ବାପାଙ୍କୁ ଶୀଘ୍ର ଭାତ ଖାଇବାକୁ ଦିଆହୁଏ । ବାପାଙ୍କ ମନଜାଣି ସିନା ତାଙ୍କୁ ଖାଇବାକୁ ଦିଆହୁଏ, ସିଏ କିନ୍ତୁ ଦିନେ ହେଲେ ମୁହଁ ଖୋଲି ମାଗନ୍ତିନି । ବାପାଙ୍କୁ ଭୋକ ଲାଗିଲେ ସିଏ ପିଲାମାନଙ୍କୁ ପଚାରିବେ, ରୋଷେଇ ସରିଲାଣି କି ? ତୁମେମାନେ ସବୁ ଖାଇଲଣି ? ସେହିଥିରୁ ଜଣାପଡେ ବାପାଙ୍କୁ ଭୋକ ଲାଗିଲାଣି । ଓଃ । ସେଥିପାଇଁ ବୋଧହୁଏ ମିତା ତାଙ୍କୁ ଗଲା ସପ୍ତାହରେ ସ୍ୱପ୍ନ ଦେଖିଥିଲା । ସେ ଦିନ ସିଏ କିନ୍ତୁ କିଛି କହିନଥିଲେ । ମିତାର ବୁଝିବାର ଥିଲା ଯେ ବାପାଙ୍କୁ ଭୋକ ଲାଗିଲାଣି । ଆଜିର ସ୍ୱପ୍ନରେ ବାପାଙ୍କୁ ମୁହଁ ଖୋଲି କହିବାକୁ ପଡ଼ିଲା ଯାହା ସିଏ ଜୀବିତ ଥିଲାବେଳେ କେବେ ବି କହିନଥିଲେ । ଝର୍କା ଆଡ଼କୁ ଅନାଇ ଦେଖିଲା ମିତା । ଚାରିଆଡ଼େ ଫର୍ଚ୍ଚା ହୋଇ ଆସୁଛି ।

ସକାଳ ହେଉ ହେଉ ମିତା ପଡ଼ିଶାରେ ଥିବା ମହାନ୍ତି ବାବୁଙ୍କ ଘରକୁ ଯାଇଥିଲା । ତାଙ୍କ ମା'ଙ୍କୁ ପ୍ରାୟ ଅଶୀବର୍ଷ ବୟସ । ତାଙ୍କୁ ମିତା ସ୍ୱପ୍ନ କଥା କହିଥିଲା ଓ କଣ କରିବ ବୋଲି ପଚାରିଥିଲା । ସିଏ ବ୍ରାହ୍ମଣ ଭୋଜନ ଦେବାପାଇଁ କହିଥିଲେ । ମିତା ତ ସେ ବ୍ୟବସ୍ଥା ଆଗରୁ କରି ରଖିଛି । ଗଲାବର୍ଷ ବାପାଙ୍କ ଶ୍ରାଦ୍ଧ ବାର ତାରିଖରେ ପଡିଥିଲା । ବୋଉର ଦେହାନ୍ତ ହେବାର ଆଠମାସ ପରେ ବାପାଙ୍କ ଦେହାନ୍ତ ହୋଇଥିବାରୁ ବୋଉ ପ୍ରଥମ ଶ୍ରାଦ୍ଧ ଘୁଂଚିଯାଇଥିଲା ନିୟମ ଅନୁଯାୟୀ । ବାପାଙ୍କର ପ୍ରଥମ ଶ୍ରାଦ୍ଧ ବାର୍ଷିକୀ ଦିନ ବୋଉର ପ୍ରଥମ ଶ୍ରାଦ୍ଧ ମଧ ପାଳନ କରାହେଉଥିଲା । ସବୁ ଭାଇ ଭଉଣୀ ଜମା ହେଇଥିଲେ କଟକ ଘରେ । ମିତା, ମିହିର ଓ ପିଲାମାନେ ବି ଯାଇଥିଲେ କଟକ । ଏ ବର୍ଷ ଯାଇପାରିବନି ଜାଣି ମିତା ବ୍ରାହ୍ମଣ ଭୋଜନର ବ୍ୟବସ୍ଥା କରିଛି ଆସନ୍ତା ତେଇଶ ତାରିଖରେ ମନ୍ଦିରରେ । ବ୍ରାହ୍ମଣ ଭୋଜନ ଆହୁରି ଚାରିଦିନ ବାକି ଅଛି । ତା ଛଡା ତା' ଦ୍ୱାରା ବାପାଙ୍କ ଭୋକ କମିବ କି ? ପ୍ରଶ୍ନ କରିଥିଲା ମିତା । ମାଉସୀ କିଛି ସମୟ ଚିନ୍ତା କରି କହିଲେ-ଆଜି ତୁମ ଘରେ ଯାହା ରୋଷେଇ ହେବ ତୁମେମାନେ ଖାଇବା ଆଗରୁ ଗୋଟେ କଦଳୀ ପତ୍ରରେ ସବୁ ବାଢ଼ିଦେଇ ବାରିଆଡେ ରଖିଦେବ । ଘର ଭିତରେ ବାଢ଼ି କି ଦେଲେ ହେବନି ? ପଚାରିଥିଲା ମିତା । ଅଳ୍ପ ହସି ମନା କରିଥିଲେ ମାଉସୀ । ମିତାର ମନେ ପଡ଼ିଲା ବୋଉ ବଂଚିଥିବା ଯାଏ ଅଜା, ଆଈଙ୍କ ଶ୍ରାଦ୍ଧଦିନ ରନ୍ଧା ସରିବା ପରେ ପତ୍ରରେ ଗରମ, ଗରମ ଭାତ, ତରକାରୀ ବାଢ଼ିଦେଇ ବୋଉ ବାରିଆଡ଼େ ଆମ୍ବଗଛ ମୂଳେ ରଖିଦେଇ ଆସୁଥିଲା ଓ ତା ପରେ ସମସ୍ତେ ଖାଉଥିଲେ ।

ଘରକୁ ଫେରିଆସି ମିତା ବାରିପଟକୁ ଯାଇ ନିରୀକ୍ଷଣ କଲା । ବର୍ଷା ଦୁଇଦିନ ହେଲା ଆରମ୍ଭ ହୋଇ ଯାଇଥିବାରୁ ପୂରାବାରିଟା ସନ୍ତସନ୍ତିଆ ହୋଇ ରହିଛି । ବାପାଙ୍କ ଭଳିଆ ପରିଷ୍କାର ଲୋକ ଯିଏ କି ସ୍ୱାସ୍ଥ୍ୟରକ୍ଷାର ସମସ୍ତ ନିୟମ ପାଳନ କରୁଥିଲେ ତାଙ୍କୁ ସିଏ ଏମିତି ଜାଗାରେ କେମିତି ଖାଇବାକୁ ଦେବ ? ବାପା ଏତେ ସଫା ସୁତୁରା ଯେ ତାଙ୍କୁ ଖାଲି ପାଦରେ ଘରେ ଚାଲିବା ମିତା କେବେ ଦେଖିନି ଆଉ ମାଟିରେ ଚାଲିବା କଥା ପଚାରେ କିଏ ? ମିତାର ମନେ ଅଛି, ଥରେ ବର୍ଷାଦିନେ ଅଗଣାରେ ବାପାଙ୍କ ଗୋଡ଼ ଖସିଯାଇ ତାଙ୍କ ହାୱାଇ ଚପଲଟା ଖଣ୍ଡେ ଦୂରରେ ପଡିଥିଲା । ବାପା ଚପଲ ପିନ୍ଧା ଗୋଡ଼ରେ ଠିଆ ହୋଇ ଆର ଗୋଡ଼ଟାକୁ ଟେକି ଘରେ ସମସ୍ତଙ୍କୁ ଡ଼ାକ ପକାଇଥିଲେ ପିଢ଼ାଟା ଆଣିବା ପାଇଁ । ପିଢ଼ା ଦେଲା ପରେ ଖାଲି ପାଦଟାକୁ ସେଥିରେ ରଖିଥିଲେ ଓ ଚପଲଟା ବଢ଼େଇଲା ପରେ ତାକୁ ପିନ୍ଧି ପିଣ୍ଡାକୁ ଆସିଥିଲେ । ତାଙ୍କୁ ତଳେ ବସିବାର ମଧ୍ଯ କେହି କେବେ ଦେଖି ନାହାନ୍ତି । ଏମିତି କି ମଶିଣା ଉପରେ ମଧ୍ଯ ନୁହେଁ । ସବୁବେଳେ ଚୌକିରେ ବସନ୍ତି । ଆଗେ ତଳେ ବସିବାକୁ ପଡୁଥିଲା ବୋଲି ବାପା କୌଣସି ଭୋଜିଭାତ ଘରକୁ ଯାଉନଥିଲେ । ପ୍ରତ୍ୟେକ ଦିନ ଘରେ ପ୍ରାର୍ଥନା କରି ମୁଣ୍ଡିଆ ମାରି ସାରିଲା ପରେ ଓଦା ଗାମୁଛାରେ କପାଳ ଓ ଦୁଇ ହାତ ପୋଛନ୍ତି ଧୂଳି ଲାଗିଯାଏ ଭାବି । ରାତିରେ ବାପା ଶେଯରେ ଯେଉଁ ଚଦର ବିଛାନ୍ତି ଓ ଘୋଡେଇ ହୁଅନ୍ତି ସେଥିରେ ଗୋଟେ ପଟର କଣରେ ଗଣ୍ଠିଟିଏ ପକାଇଥାନ୍ତି । ସେଇ ଗଣ୍ଠି ପଟଟା ବାପା ତାଙ୍କ ମୁଣ୍ଡ ପଟେ ରଖନ୍ତି । ନ ହେଲେ ସିଏ ଭାବନ୍ତି ପାଦ ଆଡେ ରହିଥିବା ଅଂଶଟି ଯଦି କେବେ ମୁଣ୍ଡ ଆଡ଼େ ରହିଯିବ ତେବେ ପାଦ ପଟର ମଇଳା ମୁଣ୍ଡରେ ଲାଗିଯିବ । କହିବା ବାହୁଲ୍ୟ ବାପାଙ୍କ ପାଦ ସବୁବେଳେ ଚକ୍ ଚକ୍ ଥାଏ ଓ ଗୋଲାପି ଦିଶେ । ଆଉ ସେଇ ବାପାଙ୍କୁ ମିତା ବାଡ଼ିଆଡେ ଭାତ ବାଢ଼ିବ ? ମିତା ବାଡ଼ିଆଡୁ ଅଗଣାକୁ ଚାଲି ଆସିଲା । ପୂରା ଅଗଣା ସିମେଣ୍ଟ ହେଇଛି । କେଉଁଠାରେ ଶୁଖିଲା ପତ୍ରଟିଏ ବି ପଡ଼ିନି । ଏଇଠି ହିଁ ବାପାଙ୍କୁ ଖାଇବାକୁ ଦେବ । କୋଉ ପାଖେ ବାଢ଼ିବ ଭାବିଲା ମିତା । ଐଶାନ୍ୟ କୋଣରେ ବାପାଙ୍କ ପାଇଁ ଭାତ ବାଢ଼ିବ । ସେଇ କୋଣଟା ଦେବତା ମାନଙ୍କ ବାସସ୍ଥାନ । ବାପା ବି କୋଉ କମ୍ ଥିଲେ ଦେବତା ମାନଙ୍କ ଠାରୁ । ସିଏତ ମଣିଷ ରୂପୀ ଦେବତା ହିଁ ଥିଲେ ।

ରୋଷେଇ ଘରକୁ ଆସି ମିତା ଭାବିଲା ମାଉସୀ କହିଲେ ଘରେ ଯାହା ରନ୍ଧା ହେବ ସେଇ ଖାଦ୍ୟ ଦେଇଦେବା ପାଇଁ । କିନ୍ତୁ ସେମାନଙ୍କ ପାଇଁ ରନ୍ଧା ହୋଇଥିବା ବ୍ୟଞ୍ଜନ କ'ଣ ବାପା ଖାଇପାରିବେ ? ଜୀବନସାରା ବାପା ନିରାମିଷ ଆହାର ଖାଇଛନ୍ତି, ତା ପୁଣି ବିନା ଲଙ୍କା ଓ ମସଲାରେ । କଂଚା ପିଆଜ, ରସୁଣ ବି କେବେ ଖାଆନ୍ତିନି । ବାପାଙ୍କୁ ପ୍ରାୟ ଭଜା ଓ

ଛଣା ଜିନିଷ ହିଁ ଭଲ ଲାଗେ । ଯେ କୌଣସି ପରିବାକୁ ସରୁସରୁ କରି କାଟି ତେଲରେ ଛାଣି ଦେଇ ଲୁଣ ଗୁଣ୍ଡ ଟିକେ ଛିଞ୍ଚିଦେଲେ ବାପା ଖୁସିରେ ଖାଉଥିଲେ । ପରିବା ଭିତରେ ଆଳୁ ଓ ଦେଶୀ ଆଳୁକୁ ପ୍ରାୟ ତାଙ୍କର ପ୍ରିୟ ଥିଲା । ଭଲ ପାଆନ୍ତି ହାଲକା ଲିଆ ବଡ଼ି । ଭାତ ସାଙ୍ଗରେ ଦହି ଭଲ ପାଆନ୍ତି । ଚିନି ପକାଇ ପ୍ରାୟ ଦହି ଖାଆନ୍ତି । ଭାତ ଖାଇ ସାରିଲା ପରେ ସେଇ ଥାଳିରେ ଫଳ ଯେମିତି ହେଲେ ଖାଇବେ । ଖରାଦିନ ହୋଇଥିଲେ ଆମ୍ବ ଦିଆ ହୁଏ ନହେଲେ ପାଚିଲା କଦଳୀ । ସବୁଠାରୁ ବେଶି ଖୁସି ହୁଅନ୍ତି ବାପା ରସଗୋଲା ଖାଇବାକୁ । ସେତେବେଳେର ଚାରଣିଆ, ଆଠଣିଆ ରସଗୋଲା ବାପାଙ୍କ ମନକୁ ପାଏନି । କହନ୍ତି ବଳଟେ ନାଆଁକୁ ହେଇଚି, ଖାଇଲେ ପାଟିକୁ ଜଣାପଡୁନି । ସେଥିପାଇଁ ବାପାଙ୍କୁ ଦୁଇ ଟଙ୍କିଆ ରସଗୋଲା ଦିଆ ହେଉଥିଲା । ପରେ ପରେ ପାଞ୍ଚ ଟଙ୍କିଆ ଓ ଶେଷରେ ଦଶ ଟଙ୍କିଆ ରସଗୋଲା । ମିତା ଯେତେବେଳେ କଟକ ଯାଏ ସିଏ ତାଙ୍କ ପାଇଁ ଦାମ ମହାରାଜ ଦୋକାନରୁ ଦଶଟଙ୍କିଆ ରସଗୋଲା ନେଇଯାଏ ।

ବଜାରରୁ ମିଠାଦହି ଓ ରସଗୋଲା ମଗାଇ ସାରି ମିତା ରୋଷେଇ ଆରମ୍ଭ କଲା । ବାପାଙ୍କ ପାଇଁ ରାନ୍ଧିଲା ଅରୁଆ ଭାତ, ମହାପ୍ରସାଦ ଡାଲି ପରି ବହଳିଆ ମିଠା ହରଡ ଡ଼ାଲି ଯେଉଁଟା କି ବାପା ଖୁବ୍ ଭଲ ପାଉଥିଲେ । ତା ସାଙ୍ଗକୁ ଆଳୁ ଭରତା । ଦେଶୀ ଆଳୁ ରେ ଚାଉଳ ପିଠୋଉ ଦେଇ କଡକଡ଼ିଆ ଭଜା । ଆଳୁ ପୋଟଳ ସରୁ ସରୁ କାଟି ସାଥିରେ ଛାଣି ଦେଲା । ଆମ୍ବ ଖଟା ଓ ଲିଆ ବଡି ଛଣା । ସବୁ ରାନ୍ଧି ସାରିଲା ପରେ ମିତାର ମନେ ପଡ଼ିଲା ଝିଅ ଦିନେ ମିତା ସବୁବେଳେ ବାପାଙ୍କ ପାଇଁ ବାଢ଼ି ଦେଉଥିଲା । ଇଂରାଜୀ ଏଲ୍ ପରି ଥିବା କଟକ ଘରର ଗୋଟେ ପଟେ ରୋଷେଇ ଘର । ଆର ପଟରେ ଉପର ମହଲାରେ ବାପାଙ୍କ ପଢ଼ାଘର । ବଡ ପିଢ଼ା ପକାଇ ପାଣି ଗ୍ଲାସେ ରଖି ବାପାଙ୍କର ଖାଇବା ସରଞ୍ଜାମ ସବୁ ତିଆରି କରିସାରି ମିତା ରୋଷେଇ ଘର ବାରଣ୍ଡାରୁ ବଡ଼ ପାଟିରେ ତାଙ୍କୁ ଡାକେ-'ବାପା, ଭାତ ବଢ଼ା ହେଲାଣି ଆସ ଖାଇବ ।' ମିତାର ଡାକ ଶୁଣି ଚପଲ ଠପ୍ ଠପ୍ କରି ଉପରୁ ଓହ୍ଲାଇ ବାପା ଆସନ୍ତି । ବାପା ଖାଇଲାବେଳେ ସିଏ ସେଠି ଜଗିକି ବସେ । କାହିଁକି ନା ବାପାଙ୍କୁ ଯାହା ପ୍ରଥମରେ ବଢ଼ା ହୋଇଥିବ ସେତିକି ଖାଇ ଉଠିଯାଆନ୍ତି । ଦ୍ୱିତୀୟ ଥର ଜମାରୁ ମାଗନ୍ତିନି, ପେଟ ପୂରି ନଥିଲେ ବି । ପାଖରେ ବସି ମିତା ବଳେଇ ବଳେଇ ବାପାଙ୍କୁ ଖୁଆଏ । ବାପା ସନ୍ତୁଷ୍ଟ ହୋଇ ତାକୁ କହନ୍ତି, ତାଙ୍କ ମା' କୁଆଡେ ପିଲାଦିନେ ତାଙ୍କୁ ଏମିତି ଖୁଆଉଥିଲେ ଆଉ ଏ ଦିନେ ମିତା ସେମିତି ଖୁଆଉଛି । ବାପାଙ୍କ ପ୍ରଶଂସା ଶୁଣି ଖୁସି ହୁଏ ମିତା ।

ରୋଷେଇ ଘରେ ବାପାଙ୍କୁ ବାଢ଼ିବା ଆଗରୁ ସେ ଜାଗାରେ ପାଣି ଛିଞ୍ଚିଥାଏ ମିତା । ନ ହେଲେ ବାପା କହିବେ ଧୂଳି ଉଠି ଖାଦ୍ୟରେ ପଡ଼ିବ । ଧୂଳି ଉଡ଼ିବା କଥା ମନେ ପଡ଼ିଯିବାରୁ ମିତା ବାଲଟିଏ ପାଣି ଓ ଖଡିକା ଝାଡୁ ଧରିଗଲା ଅଗଣାଟା ଧୋଇ ଦେବା ପାଇଁ । ତା ପରେ ହାତ ଧୋଇ ଠାକୁର ଘରୁ ପିଢ଼ାଟି ଆଣି ପକାଇଲା ଐଶାନ୍ୟ କୋଣରେ, ଯେମିତି ବାପା ପୂର୍ବ ଦିଗକୁ ମୁହଁ କରି ଖାଇ ବସିବେ । ପିଢ଼ା ସାମନାରେ ପାଣି ଗ୍ଲାସେ ଆଣି ରଖିଲା । ବାପା ଚାମଚରେ ଖାଆନ୍ତିନି । ଉପରକୁ ଚାହିଁ ଦେଖିଲା ମିତା, ଆକାଶ ମେଘାଚ୍ଛନ୍ନ ରହିଛି । ଖରା ଲାଗିବନି ବାପାଙ୍କ ଦେହରେ । ଆଶ୍ୱସ୍ତ ହେଲା ମିତା ।

ରୋଷେଇ ଘରକୁ ଆସି ଥାଳି ଉପରେ ଧୁଆ ହୋଇଥିବା ଖଲି ପତ୍ର ଓ ଦନା ରଖି ପ୍ରଥମେ କଟା ଆମ୍ବ, ମିଠା ଦହି ଓ ରସଗୋଲା ବାଢ଼ିଲା । ତାପରେ ସବୁ ବ୍ୟଞ୍ଜନ ଓ ଶେଷରେ ତତଲା ଭାତ ଓ ଡାଲି । ଭାତ ଉପରେ ଘିଅ ପକାଇ ଚାମଚଟା ତା ଉପରେ ରଖିଲା । ବାପା ଚାମଚରେ ଖାଆନ୍ତି । ଅଗଣାକୁ ଯାଇ ଥାଳି ଉପରୁ ପତ୍ର ଖସାଇ ଥାଳିଟି ପିଢ଼ା ସାମନାରେ ରଖିଲା ଓ ତା ପାଟିରୁ ବାହାରି ପଡ଼ିଲା-'ବାପା, ଭାତ ବଢ଼ା ହେଲାଣି, ଆସ ଖାଇବ ।' ତା ପାଟିରୁ କଥା ସରିଛି କି ନାହିଁ ଆକାଶରୁ କେଇ ବୁନ୍ଦା ପାଣି ଝରି ପଡ଼ିଲା ଟିପ୍ ଟିପ୍ ହୋଇ । ଚକିତ ହେଲା ମିତା । ତାକୁ ଲାଗିଲା ତା' ଡାକ ଶୁଣି ବାପା ଉପର ପଡ଼ାଘରୁ ଯେମିତି ଓହ୍ଲାଇ ଆସନ୍ତି ସେମିତ ବର୍ଷାର ବାରି ହୋଇ ସ୍ୱର୍ଗପୁରରୁ ଓହ୍ଲାଇ ଆସିଲେ ଅବା । ଠିକ୍ ତା ପରେ ମୃଦୁ ପବନରେ ମିତାର କାନ ପାଖର ଧଳା ପଡି ଆସୁଥିବା କେଶଗୁଚ୍ଛ ସାମାନ୍ୟ ଉଡିଥିଲା ଓ ସିଏ ଶୁଣି ପାରିଲା ବାପା କହୁଛନ୍ତି-'ମିତା ବୁଢ଼ି ! ତୁ ଠିକ୍ ମୋ ମା'ଙ୍କ ପରି ବାଢ଼ିଛୁ ।' ବାପାଙ୍କ ଉପସ୍ଥିତି ଉପଲବ୍ଧି କରି ମିତା ତଳେ ମୁଣ୍ଡ ଲଗାଇ ପ୍ରଣାମ କଲା ଓ ତା ଆଖିର ଅମାନିଆ ଲୁହ ଧାର ଧାର ହୋଇ ବୋହିବାକୁ ଲାଗିଲା ।





ଗୀତା ତ୍ରିପାଠୀ ପେଶାରେ ଡାକ୍ତର । କିନ୍ତୁ ରଚି ରଖନ୍ତି ସାହିତ୍ୟରେ । ପ୍ରଖ୍ୟାତ ଭାଷାତତ୍ତ୍ୱବିଦ୍ ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀଙ୍କ ଦାୟାଦରୂପେ ପାଇଛନ୍ତି ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି ଶ୍ରଦ୍ଧା ଓ ଅନୁରାଗ ।

ତାଙ୍କର କ୍ଷୁଦ୍ରଗଳ୍ପ ଗୁଡ଼ିକ ତାଙ୍କର ନିଜସ୍ୱ ଅନୁଭୂତି ଉପରେ ପର୍ଯ୍ୟବେସିତ । ଜୀବନର ନିତିଦିନିଆ ଘଟଣାବଳୀରେ ପାଆନ୍ତି କାହାଣୀର ବିଷୟବସ୍ତୁ । ପାଠକ ତେଣୁ ସହଜରେ ଏକାତ୍ମୀଭୂତ ହୋଇ ପାରନ୍ତି ତାଙ୍କ ଗପ ସହିତ । ନିର୍ଦ୍ଦିଷ୍ଟ ଘଟଣାଟି ବ୍ୟକ୍ତିଗତ ନରହି ହୋଇଯାଏ ସାର୍ବଜନୀନ । ରାଜ୍ୟ କଳା, ଗବେଷଣା ଓ ପ୍ରଶିକ୍ଷଣ ପରିଷଦ ତରଫରୁ ୨୦୦୩ ମସିହାରେ ସାହିତ୍ୟିକା ହିସାବରେ ସମ୍ମାନିତା ହୋଇଛନ୍ତି ଡାକ୍ତର ତ୍ରିପାଠୀ । ତାଙ୍କ ଦ୍ୱାରା ଲିଖିତ ଏ ପୁସ୍ତକର ସମସ୍ତ ଗଳ୍ପ, ପୂର୍ବରୁ ବିଭିନ୍ନ ପତ୍ରପତ୍ରିକାରେ ସ୍ଥାନିତ ହୋଇ ପ୍ରଚୁର ପାଠକୀୟ ସ୍ୱୀକୃତି ମଧ୍ୟ ଲାଭ କରିଛି ।

ପୁତ୍ର, କନ୍ୟା ଓ ଡାକ୍ତର ସ୍ୱାମୀଙ୍କୁ ନେଇ ତାଙ୍କ ସଂସାର । ସ୍ୱଭାବରେ ଈଶ୍ୱର ବିଶ୍ୱାସୀ ଓ ପ୍ରକୃତିପ୍ରେମୀ । ଭଲ ପାଆନ୍ତି ପରିଚ୍ଛନ୍ନତା-ଉଭୟ ହୃଦୟର ଏବଂ ପରିବେଶର ।

ଡାକ୍ତର ତ୍ରିପାଠୀ ବର୍ତ୍ତମାନ ରାଉରକେଲାର ଇସ୍‌ପାତ ଜେନେରାଲ୍ ହସ୍‌ପିଟାଲ୍‌ରେ ଆସିଷ୍ଟାଣ୍ଟ ଡାଇରେକ୍ଟର ରୂପେ ଅବସ୍ଥାପିତା ।

– ପ୍ରକାଶକ